ଶୀତଳସମୀରେ ସଖୀ ଶୀତ କଲା ମନ୍ତେ ।
ସମ୍ଭାଳନ୍ତେ ବିକାର ପ୍ରକାଶ ହୁଏ ଗାତ୍ରେ ॥
ସଜଳଲୋଚନ ନିଜ ଅଞ୍ଚଳେ ପୋଛଇ ।
ପରାଗ ପଡ଼ିଲା ବୋଲି ମିଛେହିଁ ବଞ୍ଚାଇ ॥
ଦମଦମ ଉର ଓଷ୍ଠ ସୁରଙ୍ଗ ଲୁଟଇ ।
ପ୍ରଖର ନିଶ୍ୱାସ କେଶ ବସନ ଫିଟଇ ॥
ମନ ମତ୍ତ ନୟନ ଯେ ଏକାଳୟେ ମିଶି ।
ଲଜ୍ଜାଭୟ ମଦନ ବିବେକ-ଜଳେ ଭାସି ॥
ଗୃହୁଁ ଗୃହୁଁ ଧଇର୍ଯ୍ୟକୁ ନ ପାରେ ସମ୍ଭାଳି ।
କୋଳ କରୁଁ ଲଳିତା ଉପରେ ମୋହ ଢଳି ॥
ଦେଖି ବେଗେ ଧରି ଅଙ୍ଗେ ଆଉଜୁ ବସାଇ ।
ସଖୀ-ଦୁଃଖେ ମତ୍ତ ଖେଦ ସମୁଦ୍ରେ ଭସାଇ ॥
କେହୁ ନାସେ ହସ୍ତ ଦେଇ ଶ୍ରବଣ ଫୁଙ୍କଇ
ପାଦପାଣି ମଞ୍ଚାଳ କେ ନାଟିକା ଦେଖଇ ॥
ଶୀତଳ ଜଳକୁ ସିଞ୍ଚି ଧୀରେ ଧୀରେ ବିଞ୍ଚି ।
ପଟ ମୁଦାଇଣି କଞ୍ଜଦଳ ଶଯ୍ୟା ରଞ୍ଚି ॥
ଏକ ଆରେ ଗତାଗତ ନନେ ଇଙ୍ଗିତେ ।
ଶବରେ ଏ ଅନୁରାଗ କି ହେବ ସାକ୍ଷାତେ ॥
ଲଳିତା ବୋଇଲେ ଯେହୁ ଯାହା ସଙ୍ଗ ଯୋଗ ।
ଅନୁରାଗ ବଢ଼ନ୍ତ ବେଗରେ ହୁଏ ରୋଗ ॥
ଅନ୍ତଃପୁରେ ରଖି ଅତି ଯତ୍ନ କରିଥିଲେ ।
ମନ ନଷ୍ଟ ବିକଲେ କେ ରଖିପାରେ ଭଲେ ॥
କର୍ଣ୍ଣ୍ୟାନ ଜଟିଲା ସେ ନ ଜାଣି ଯେମନ୍ତ ।
ପଲଙ୍କେରେ ପହୁଡ଼ାଇ କରାଇ ସଚେତ ॥
ସେଥୁ ସେବା ଆବୋରଣ ସଖୀ ଚଉପାଶେ ।
ନୃପପୁତ୍ରୀ ହୃଦୟରେ ମଦନ-ହୁତାଶ ॥
ତନୁତପତ କି ଅଙ୍ଗେ ଲେପି ଚନ୍ଦ୍ରସମ ।
ସଜଳକମଳ ଦଳ ଶଯ୍ୟା ଅନୁପମ ॥
କେମନ୍ଦେହ ଯତେବେଗ ସକଳତା ଲେଖୁ ।
ଏକମାତ୍ର ଶବରୂପ ନେତ୍ରେ ଲାଗିଅଛୁ ॥
ହୃଦୟେ ପଶିଣି ଧୁକଡ଼ି ମରମେ ରହିଲା ।
ଆନ ପ୍ରସଙ୍ଗରେ ତାର ସରାଗ ନୋହିଲା ॥
ନୟନ ବୁଜିଲେ ରୂପ ହୃଦୟେ ଦିଶଇ ।
ଶ୍ୟାମରୂପେ ନାନାରଙ୍ଗେ ମନେ ବିଳସଇ ॥

ଏମନ୍ତେଣ ନିଶି ଆସି ଉଣାଭାବ ହେଲା ।
ଛନ୍ନଛନ୍ନ ହୋଇ ନେତ୍ରେ ନିଦ୍ରା ନ ମାଡ଼ିଲା ॥
କେତେବେଳେ ନିଦ୍ରାଗତେ ଦେଖନ୍ତି ସ୍ୱପନ ।
ଅଭିନବ ଘନଶ୍ୟାମ ମଦନମୋହନ ॥
ଚରଣ ସୁରଙ୍ଗ ପଦ୍ମ କେଶର ଅଙ୍ଗୁଳି ।
ପରାଗେ ଭୂଷିତ ଅଗ୍ର ନଖଚନ୍ଦ୍ର ଝଳି ॥
ନୂପୁର ମର୍କତଚୟ ମଧୁକର ଧ୍ୱନି ।
ତହିଁରେ ଚିତ୍ତ ଅବଳା ସୁଗନ୍ଧକୁ ଘେନି ॥
ଓଲଟ କଦଳୀକାଣ୍ଡ ବଳନି ଯୁଜାନୁ ।
ବିପୁଳନିତମ୍ବଯୁଗ ନ ଯାଇ ନିଧ୍ୟାନୁ ॥
ସିଂହକଟିତଟେ ପୀତପଟ୍ଟନ ଶୋଭିତ ।
କୁଞ୍ଚିତ ସୁରଙ୍ଗ ଧଡ଼ି ଆଗରେ ଲମ୍ବିତ ॥
ଝମ୍ପାଗ୍ରେଳ ମୋତିସାର ମେଖଳା ଜଡ଼ାଉ ।
ନାନା ରତ୍ନ ଖଞ୍ଜାଣିରେ ଦିଶେ ଦାଉଦାଉ ॥
ଶୁକ୍ଳସୁରଙ୍ଗପଟ୍ଟ ଦୋପଡ଼ା ବେଢ଼ାଇ ।
ଦେଖି କୁଳବତୀ-ମତି କୁଳକୁ ଛଡ଼ାଇ ॥
ମଣିହାର ପଦକ ବିସ୍ତାର ହୃଦୟରେ ।
ସର୍ବାଙ୍ଗରେ ଚନ୍ଦନ ଲେପନ ଘନସାରେ ॥
ନବନୀରଦରେ ଚନ୍ଦ୍ର ଉଦେ ଶୋଭା ଦିଶେ ।
କମ୍ବୁକଣ୍ଠେ ବନମାଳା ଉଡ଼ୁଗଣ କି ସେ ॥
ଆଜାନୁଲମ୍ବିତ ବାହୁ ମରକତ ସ୍ତମ୍ଭ ।
ହେମରତ୍ନେ ବଳୟ ମୁଦ୍ରିକା ହରେ ଦମ୍ଭ ॥
ମଦନ-ମୁକୁର ମୁଖ-ଚିବୁକ ଚଟୁଳ !
ବିମ୍ବାଧରେ ମୃଦୁହାସ ଭୁବନମଣ୍ଡଳ ॥
ଖଗାଧିନାସାରେ ଗଜମୋତିବର ଶୋଭେ ।
ତିଳପୁଷ୍ପେ ଅନଙ୍ଗ କି ଅମୃତ ବିନ୍ଦୁ ରହେ ॥
ନୀଳୋତ୍ପଳ ଲୋଚନ ଯୁଗଳ କାମବାଣ ।
ଆକର୍ଣ୍ଣ ଅପାଙ୍ଗ ଭୁରୁ ଭ୍ରୂଲତା କମାଣ ॥
କାମିନୀ ହୃଦୟ ଭେଦି କରେ ଖଣ୍ଡ ଖଣ୍ଡ ।
ନାଚେ ବେନି ମକରକୁଣ୍ଡଳ ଗୁରୁଗଣ୍ଡ ॥
ଘନ କପୋଳେ ଅଛି ଚନ୍ଦନର ଫାଟି ।
ପତିବ୍ରତା ଦେଖିଲେ ଧଇର୍ଯ୍ୟ ଯାଏ ଫାଟି ॥
ଅକଳଙ୍କ ଖଣ୍ଡ-ସୁଧାକର ଉଦେ କି ସେ ।
ମିତ୍ର ସମାଦରେ ପକ୍ଷପାତ ହୋଇ ହାସେ ॥

ମଦନ ଅମୋଘପାଶ କଣ୍ଠଲଗ୍ନ କଣ୍ଠି ।
ଅଳକାସୁକଳ ବେଢ଼ି ମୋହେ ତ୍ରିଭୁବନ ॥
ସମ୍ପଦ ରକ୍ଷଣେ ମାଳ ପାଚେଶ୍ୱ ବେଢ଼ାଇ ।
ବଦନ ଲାବଣ୍ୟ ଯେଡ଼େ ମଦନ ବଢ଼ାଇ ॥
କିରୀଟ ମୁକୁଟେ ହୀରାନାସୂକ ବିରାଜେ ।
ଯୁବତୀଙ୍କ କୁଳଲଜ୍ଜା ଅନ୍ଧକାର ଗଞ୍ଜେ ॥
କୁଞ୍ଚିତଚିକୁର ଘୂରୁ ଚୂଡ଼ା ପୁଷ୍ପଗଭ ।
କେତକୀପାଖୁଡ଼ା ବେଢ଼ା କେକୀପୁଚ୍ଛ ଶୋଭ ॥
ଶରଣ ପଶିଣ କାମ-ଶର୍ଧୃକୁଳ ଜିଣି ।
ତରାସ ଟେକାଇ କି ଦେଖାଇ ବଢ଼ିଯାଣି ॥
ଏମନ୍ତ ସ୍ୱରୂପେ କୃଷ୍ଣ ପଲଙ୍କେ ବସିଲେ ।
ପ୍ରାଣପ୍ରିୟେ ପ୍ରୀତିବଶେ ବଚନ ଭାଷିଲେ ॥
କରପଦ ଶ୍ରୀଅଙ୍ଗରେ ଦେଇଣ ଆଶ୍ୱାସି ।
ଚନ୍ଦନ ଶୀତଳ ତନୁ ତପତିକ ନାଶି ॥
ଅଗ୍ରସର ବିମ୍ବାଧର ଚୁମ୍ବନଲାଳସେ ।
ସଲଜ୍ଜେ ବଦନ ଆଡ଼େ ଉଦାଡ଼ଣ ବାସେ ॥
ଏମନ୍ତ ସମୟେ ନିଦ୍ରା ଚେତ ଜେମାଦେଈ ।
ନ ଦେଖିଣ ଆହା ନାଥ ବୋଲି ବିଳପଇ ॥
ଶୁଣି ଆଳୀ ପାଶେ ମିଳି ପୁଚ୍ଛନ୍ତି ବିଶ୍ୱାସେ ।
ଅକାରଣେ କାରୁଣ୍ୟ ଯେ କରୁ ନିଶିଶେଷେ ॥
ଶାଶୁ ଯେ ନଣନ୍ଦ ଶୁଣି କି ବୋଲି ବୋଲିବେ ।
ଚନ୍ଦ୍ରାବଳୀ ସଖୀଗଣ ଶୁଣି ଯେ କଳିବେ ॥
ଶୁଣି ବାମା ସଙ୍କୋଚରେ ମଉନ ହୋଇଲେ ।
ବିଶାଖା ବଦନ ଚୂମ୍ବି ଲଳିତା ବୋଇଲେ ॥
ସ୍ୱପନ ବିକାରଭାବେ କରେ ଏ ବେଦନ ।
ସର୍ବଦା ତ ବାଧା ହୋଇ ଲାଗିଛି ମଦନ ॥
ସୁଚକ୍ଷା ଚମ୍ପକଲତା ହୋନ୍ତି କୁହାକୁହି ।
ଚିତ୍ରପ୍ରତିମାର ରୂପ ହୃଦୟ ଚରଇ ॥
ନିଦ୍ରାଗତେ ସ୍ୱପନରେ ଦେଖିଲା ସ୍ୱରୂପେ ।
ବିଚ୍ଛେଦେ ବେଦଇ ଅତି ବିରହ ସନ୍ତାପେ ॥
ରଙ୍ଗଦେବୀ ସୁଦେବୀ ଏ ବେନି ଜନ କଥା ।
ଜେମାଦେଈ ମରମରେ ଫୁଲଶର ବ୍ୟଥା ॥
ଚିତ୍ରପଟ କୁମରରେ ଅନୁରାଗ ବଢ଼େ ।
ସେହିରୂପ ଭାବେ ବାଳୀ ପଲଙ୍କେ ପଡ଼ୁଡ଼ ॥

ତୁଙ୍ଗବିଦ୍ୟା ଶଶିରେଖା କରନ୍ତି କୁହାକୁହି ।
ନ ଦେଖି ନ ଶୁଣି ଜେମା ଏଡ଼େ ତ ବିରହୀ ॥
ସାକ୍ଷାତେ ଦେଖିଲେ ଅନଙ୍ଗ ଅଙ୍ଗ ମିବ ମିଶି ।
ଧୈର୍ଯ୍ୟକୁ ଧରି ନ ପାରିବ ଏ ଧୂକେଶୀ ॥
ପ୍ରକାଶ ନ କର ଯେଝାମତେ ଅନୁସର ।
ପ୍ରାତଃକାଳେ ଯେଝାମତେ ନିତ୍ୟକର୍ମ ସାର ॥
ବୃନ୍ଦା ଦରଶନେ କଲେ ଫଳପୁଷ୍ପ ଯେନ ।
ଦେଖିଣ ସନ୍ତୋଷଚିତ୍ତ ନୃପତିନନ୍ଦନୀ ॥
ଏକାନ୍ତେ ପୁଚ୍ଛଇ ଜେମା ଶୁଣ ବନେଶ୍ୱରୀ ।
କହ ମୋତେ ନନ୍ଦସୁତ ଚରିତ ବିସ୍ତାରି ॥
କିସ କିପ ମହିମା କେବଣ ଗୁଣ କର୍ମ ।
ଚିତ୍ରପଟେ ଦେଖି ସଖୀ ମନ ହେଲା ଭ୍ରମ ॥
ଆଜ ରଜନୀରେ ତାଙ୍କୁ ଦେଖିଲି ସ୍ୱପନେ ।
କୋଟିଗୁଣେ ଶୋଭା କିସ କହିବି ବଚନେ ॥
ମନ୍ଦହାସେ ମନକୁ ରଖିଲେ କରି ବନ୍ଧ !
ନୟନକଟାକ୍ଷ-ଶରେ ମରମକୁ ଭେଦ ॥
ଶରଦପୂର୍ଣ୍ଣଚନ୍ଦ୍ରମା ମୁଖ ଆହ୍ଲାଦେ ।
ଲୋଚନ ଚକୋରହୃଦ କୁମୁଦ ପ୍ରମୋଦେ ॥
ବଚନ ଅମୃତେ ଅନ୍ତଃ ପ୍ରେମଲତା ବଢ଼ି ।
ଶ୍ୟାମଳ ତମାଳତରୁ ଅବଲମ୍ବ ଲୋଡ଼ି ॥
ସେହିରୂପ ଦେଖିବି ଶୁଣିବି ସେହି କଥା ।
ଏହା ବିନା ଯେତେ ମୋତେ ଲାଗେ ଗରୁବ୍ୟଥା ॥
ହରଷେ ବୋଲନ୍ତି ବୃନ୍ଦା ଶୁଣିବା ଲୋ ସଖି ।
ନନ୍ଦସୁତ ମହିମା ଯା ଶୁଣିଅଛୁ ଦେଖି ॥
ଦିନେହିଁ ହୋଇଣ ପୂତନା ହତ କଲା ।
ଉଠିଆରି ହିନ ପାଦେ ଶକଟ ଭାଙ୍ଗିଲା ॥
ତୃଣାବର୍ତ୍ତ ଉଡ଼ାଇଣ ଗଗନେ ନାଶିଲା ।
ଅମରକାମିନୀ ନେତ୍ରକମଳ ତୋଷିଲା ॥
ବନ୍ଧନରେ ଯାମଳା ଅର୍ଜୁନ ମୋକ୍ଷ କଲେ ।
ବଚ୍ଛା ରଖି ବନେ ବଚ୍ଛାସୁରକୁ ମାଇଲେ ॥
ଭ୍ରୂଭଙ୍ଗୀ ମଳିକା ମାତା କୋଳନେଇ ବକେ ।
କୋଳେକୋଳ ଡାକିଲେ କୁମାରେ ଏକେ ଏକେ ॥
ନନ୍ଦର କନ୍ଦରେ ଥାଇ ଶୁଣିଲେ ମୋହିନୀ ।
ବାହାର ହୋଇଲେ ଧରୁ ଅଞ୍ଜଳୀଏ ଯେନ ॥

ଗ୍ଭଲନ୍ତେ ଚରଣତଳ ଅବନୀ ବିରାଜେ ।
ମହାମରକତ ହେମ ଗୋଟପୁଞ୍ଜ ମାଝେ ॥
ଦେଖିଣ ଶବରୀ ବେଗେ ପାଞ୍ଚଲିକ ମାନ ।
ଧାନ ଯେନ ହୃଏ କୋଳ କର ପୂରଇଣ ॥
ଗୃହ ବରଷିର ଯେ ଖଜୁରୀ ଜାମ୍ବୁକୋଳ ।
ଯେତେ ଦେଲେ ନ ପୂରଇ କୃଷ୍ଣର ଅଞ୍ଜୁଳ ॥
ଯେତେ ନେଇଥିଲା ସେ ସକଳ ଆଣି ଦେଲା ।
ତଥାପି ଦେଖିଲେ ବାଲ କର ନ ପୂରିଲା ॥
ଟୋକାଇ ସେ ଶୂନ୍ୟ ଦେଖି ବିଷାଦ ଶବରୀ ।
ସୁବର୍ଣ୍ଣପୂରିତ ହେଲା ଗୃହାଙ୍ଗଣ ହରି ॥
ସେହିଦିନୁ ଦାରିଦ୍ର୍ୟ ହୋଇଲା ତାର ନାଶ ।
ଅତି ବିଚକ୍ଷଣ ସେହୁ ନନ୍ଦରାଜାଶିଷ୍ୟ ॥
ଆଶ୍ରିତ ଶ୍ରୀନେତ୍ର କୋଣେ ହୋଇଅଛୁ ବନ୍ଧ ।
ଗୋପବଧୂ-ହୃଦପଦ୍ମ ସଦ୍ମ ଦ୍ୱନ୍ଦ୍ୱ ଛନ୍ଦ ॥
ବିକାମର ଶତ ବନେ ବନେ ବିହରିଲେ ।
ଗୋବର୍ଦ୍ଧନ ତଳେ ଅର୍ଘାସୁର ସଂହାରିଲେ ॥
ଗୋକୁଳ ରଖିଣ ମହାଭୟ ଉଶ୍ୱାସିଲେ ।
ସ୍ନେହେ ବନଜୀବମାନେ ସଙ୍ଗେ ବିଶ୍ୱାସିଲେ ॥
ଯାହାରେ ଚନ୍ଦ୍ରାବଳୀ ଶିରଜାର ପୂଜାରମ୍ଭ ।
ସ୍ଫୁଲିତ କାଳିନ୍ଦୀ କୂଳ ଲଙ୍ଘି ପାଦ ଲଭେ ॥
ରୂପଗୁଣ ଲକ୍ଷଣ କି କହିବି ତାହାର ।
କୋଟି କାମ ସମ ନୁହନ୍ତି ପାଦକୁ ଯାହାର ॥
ଅଷ୍ଟାଦଶ ଚିହ୍ନାଙ୍କିତ ମରଙ୍ଗ ପ୍ରବର ।
ଗୋପୀ କୁଚକୁଙ୍କୁମରେ ହିଙ୍ଗୁଳ ଗଉର ॥
ମୃଗମଦ ପତ୍ରାବଳୀ ଲଗିଛି ସୁନ୍ଦର ।
ରଙ୍ଗଅରବିନ୍ଦ ମକରନ୍ଦ ଗନ୍ଧ ଭୃଙ୍ଗ ॥
ରୁଣୁଝୁଣୁ ନୂପୁର ସ୍ୱରରେ କୋଳାହଳ ।
କଳହଂସ ଗମନରେ ଲାବଣ୍ୟ ଶଇଳ ॥
ନଖପନ୍ତି ଜାନ୍ତି ପୁଷ୍ପମାଳ ବିକାଶଇ ।
କୁଚ ପୂର୍ଣ୍ଣକଳସେ ମଙ୍ଗଳ ପ୍ରକାଶଇ ॥
ଅନଙ୍ଗ ଅନଳ ତାପ କରଇ ଶୀତଳ ।
ତେଣୁ ଗୋପରମଣୀ ତା ଇଚ୍ଛନ୍ତି କୁଶଳ ॥
ଉମ୍ଭରୁ କଟିରେ ପୀତପଟ ପରିହରଣ ।
ଘଣ୍ଟିସାର ରସନା କିଙ୍କିଣୀ କ୍ୱଣକ୍ୱଣ ॥

ଶପ୍ତ କିଣି ଉର୍ଣ୍ଣିମ କି ବଜାଇ ମଦନ ।
ରତି କେଳି କଳାରେ କରଇ ପ୍ରମୋଦନ ॥
କୁଳବଣ୍ଟିକୁଳ କରେ କୁଳଟା ଦୂଷଣ ।
ସଞ୍ଜିଗ୍ରତ ବିଚଳିତ ବଜାଇ ଘୋଷଣ ॥
ଶ୍ରୀହରି ଚନ୍ଦନେ ସୁବଳିତ କଳେବର ।
ବେଣୁ କରେ କଙ୍କଣ ଭୂବନ ମନୋହର ॥
କମ୍ବୁକଣ୍ଠେ ବେଢ଼ିଣ ମୁକୁତାବଳୀ ମୋହେ ।
ମନ୍ଦହାସେ ଚନ୍ଦ୍ରମା ବଦନ ମନ ଶୋହେ ॥
ଶତପତ୍ର ନେତ୍ର ଅନ୍ତେ ମଦନବର୍ଦ୍ଧନ ।
କାମିନୀହୃଦସ୍ଥ-ଦ୍ରୁମ-ଧଇର୍ଯ୍ୟ ଛେଦନ ॥
ନାସେ ଗଜମୋତି କର୍ଣ୍ଣେ ମକରକୁଣ୍ଡଳ ।
ଗ୍ରହଗଣ ଉଦୟେ କି ଚନ୍ଦ୍ରମାମଣ୍ଡଳ ॥
କସ୍ତୁରୀ ତିଳକ ଯେ ଘଟନ ଭାଳପଟ ।
ବେଢ଼ିଣ ଅଳକାବଳୀ କିରୀଟ ମୁକୁଟ ॥
ଗୃତର ଚକୁରଚୂଡ଼ା ସେବନ୍ତିର ଗନ୍ଧ ।
ଶିରେ ଶ୍ରୀଖଣ୍ଡ ଶଙ୍ଖ କୋଦଣ୍ଡର ପ୍ରବନ୍ଧ ॥
କିଶୋର ବୟସ ଶ୍ୟାମ ଛଇଳ ଛଟକେ ।
ଦେଖିଲେ ନ ପଡ଼େ ଆଖି ପଲକ ଅଟକେ ॥
ଅନେକ ଜନ୍ମରେ ତପ କରିଥିବ ଯେହୁ ।
ବହୁ ପୁଣ୍ୟେ ରମଣୀ ହୋଇବ ତାର ସେହୁ ॥
ଭାବେ ବେଶ ଆନେ ପୁଣ ନୁହନ୍ତି ପ୍ରାପତ ।
ଶୁଣି ରାଧାର ଶରଧା ବଳିଲା ଅତ୍ୟନ୍ତ ॥
ସେହୁ କୁମରକୁ ସଖି ଭେଟାଇବୁ ମୋତେ ।
ହସ୍ତ ଧରି ବନପ୍ରିରେ କହୁଅଛୁ ତୋତେ ॥
ଦେଖିବ ବନରେ ଗୋଗୃରଣ ଲୀଳାରଙ୍ଗେ ।
ମନୋରଥ ପୂର୍ଣ୍ଣ କର ଭୂମ୍ଭ ଉଦଯୋଗେ ॥
ବୃନ୍ଦାବନବାସୀ ବୋଲେ ଶୁଣ ନଳିନନୟନୀ ।
ନାହିଁମୁଖୀ ବନ୍ଦୀମନ୍ତୀ ସନ୍ଧିବିଧାୟିନୀ ॥
ତୁମ୍ଭଙ୍କୁ ଯେହୁ ଏ ମିଳନ କରାଇବେ ।
ମୋହର କଳରୁ ଜନ ଭୟରୁ ତରିବେ ॥
ସୂର୍ଯ୍ୟପୂଜା ଅନ୍ତେ ହୋଇବ ଦରଶନ ।
କାନ୍ତ ମୁଖ ଅବଲୋକେ ବିଚ୍ଛେଦ ମୋଚନ ॥
ବୃନ୍ଦା ତହିଁ ଖୁଣ କମି ଶୁଣ ନୃପସୁତା ।
ବିରହବିହ୍ୱଳ ବଢ଼େ ଉନ୍ମାଦ ମମତା ॥

ଜେମାଦେଈ ବରସ ଦେଖିଣ ସଖୀଗଣ ।
ବରସରେ ବସିଣ କରନ୍ତି ବସ୍ତୁରଣ ॥
ଦିନୁ ଦିନୁ କ୍ଷୀଣ ଯେ ହୋଇଲା ପ୍ରାଣସଖୀ ।
ଏହାର ଅବସ୍ଥା ଆମ୍ଭେ ନ ପାରୁ ଦେଖି ॥
ତେଜିଲା ବିବିଧ ଭୋଗ ଭୋଜନ ସୁବେଶ ।
ପଦ୍ମନେତ୍ର ବିମ୍ବାଧରେ ନାହିଁ ମନ୍ଦ ହାସ ॥
କୋକିଳ ବଚନ ଶୁଣି ଚମକ ପଡ଼ଇ ।
ହଂସତୂଳ ପଲ୍ୟଙ୍କ ତ୍ୟଜି ଅବନି ଗଡ଼ଇ ॥
ଚନ୍ଦ୍ରକୁ ତପନ ମଣି ପଶଇ ସଦନ ।
ଦର୍ପଣେ ନ ଦେଖେ ଏବେ ଆପଣା ବଦନ ॥
ଧୈର୍ଯ୍ୟବନ୍ତୀ ଅତି ମତି ଧୃତି ଅସମ୍ଭାଳେ ।
କହିଁ କହିଁ ବଚନରେ ପ୍ରଳାପ ବହିଲେ ॥
ଅଙ୍ଗଭୋଗେ ଅନୁରାଗ ନ କରଇ ଭଲେ ।
ଅନୁକ୍ଷଣେ ଲୋତକ ଯେ ପୂରୁଥାଇ ଡୋଳେ ॥
ପଚାରିଲେ ନ କହଇ କହିଲେ ନ ଆସେ ।
ଦୁଃଖେ ରହେ ଚକୋର ସେ ଯେସନ ଉଁଆସେ ॥
ଲଳିତା ବୋଇଲେ ଅନ୍ତେ ଚିନ୍ତା ଛାର ରହୁ ।
ଧୈର୍ଯ୍ୟବନ୍ତ ଯେଣୁ ତେଣୁ ଫେଡ଼ିଣ ନ କହୁ ॥
ପୌର୍ଣ୍ଣମାସୀ ଭଗବତୀ ବନେ ଯା କହିଲେ ।
ନିଜ କାନ୍ତ ପାଦ ପଦ୍ମ ଆରାଧି ବୋଇଲେ ॥
ସେହିଦିନୁ ସଖୀ ଅନ୍ତେ ଚିନ୍ତା ଯେ ଛାଡ଼ିଲା ।
ଆମ୍ଭମାନଙ୍କର ମନେ ସଂଶୟ ହୋଇଲା ॥
ସେହି ରୂପ ତପସ୍ୟାରେ ଦେଖିଣ ବରହ ।
ମହାସତୀ ପତିବ୍ରତା ହୋଇଲା ସନ୍ଦେହ ॥
ପୌର୍ଣ୍ଣମାସୀ ବଚନ ନୁହଇ କେଭେ ମିଛ ।
ଯାହା କହିଲେ ସେ କଥା ଅଟଇ ପ୍ରତ୍ୟକ୍ଷ ॥
ତୁମ୍ଭମାନଙ୍କ ମନକୁ କେମନ୍ତେ ଆସଇ ।
ଶୁଣି ତା ବିଶାଖା ସଖୀ ବଚନ ଭାଷଇ ॥
ପୌର୍ଣ୍ଣମାସୀ ଭଗବତୀ ବଚନ ଯେ ସତ୍ୟ ।
ପୂର୍ବେ ଯାହା ଶୁଣିଅଛୁ ବଚନ ସିଦ୍ଧାନ୍ତ ॥
କାର୍ତ୍ତିକ ମାସରେ ଏହି ଗୋପେଶ୍ୱର ସ୍ଥାନେ ।
ପୂର୍ବେ କଦମ୍ବ ତହିଁ ମିଳି ମୁନିମାନେ ॥
ଶ୍ରୀ ଦାମୋଦର ବ୍ରତ ପୂଜାଫଳ ଯେତେ ।
କହନ୍ତି ବିହିତ ସେ ଅନେକ ବିଧିମତେ ॥
ରାଧା ଅଭିମନ୍ୟୁ ବୋଲି କାହିଁ ତ ନ ଶୁଣି ।
ରାଧାକୃଷ୍ଣ ରାଧାକୃଷ୍ଣ ଜଗତେ ବଖାଣି ॥
କେବଣ ଶାପରେ ପତି ପାଇଲା ମୃଗାକ୍ଷୀ ।
ଭୋଗ ନୁହେ ମଧୁ ଯେହ୍ନେ ସଞ୍ଚେ ମଧୁମାଛି ॥
ମୁଖରେ ଅନଳ ଦେଇ ଆନେ କରେ ଭୋଗ ।
ନ ଧରେ ଉଚ୍ଛିଷ୍ଟ ଦୋଷ ଦେବତାଙ୍କୁ ଯୋଗ ॥
ସେହିମତ ଅଭିମନ୍ୟୁ ହୋଇଛି ଜଗିଆ ।
ନିଷ୍ଟେ ଭୋଗ କରିବ ଗୋ ସେ ନବରଙ୍ଗିଆ ॥
ବୋଲଇ ବିଚକ୍ଷା ସଖୀ ଶୁଣ ଏକଚିତ୍ତେ ।
ଅବିବାହ କାଳରେ ଚରିତ ଯେତେ ଯେତେ ॥
ଜେମାଦେଈ ରୂପ ଗୁଣ ଶୋଭା ଶୁଣି କର୍ଣ୍ଣେ ।
ହୋଇଲେ ଅନେକ ବର ନୃପତିନନ୍ଦନେ ॥
ମହା ମହା ରାଜାମାନେ ରଣେ ଅଜିତା ।
ବରଣ ନ କଲେ ଦେଖି କାହାକୁହିଁ ପିତା ॥
ରୂପଗୁଣେ ସୁନ୍ଦର ଯେ କନ୍ଦର୍ପ ସଦୃଶ ।
ରୋଷଭରେ ବାହୁଡ଼ି ନ ଯାନ୍ତି ନିଜ ଦେଶ ॥
ଅନେକ ଯେ ଦିନ ରହି ହୋଇ ଏକମନ ।
ଗୋପେଶ୍ୱରଦେବଙ୍କୁ ସେ କଲେ ଦରଶନ ॥
ସତ୍ୟ ଉଚ୍ଚାରିଲେ ତହିଁ ନରେଶକୁମରେ ।
ନୃପତି ଦୁହିତା ଏଥି ପ୍ରାପତ କାହାରେ ॥
ବିଶ୍ୱନାଥ ଦେବଙ୍କୁ ଯେ କରାଇ ପ୍ରସନ୍ନ ।
ପ୍ରମାଣ ଜାଣିଲେ କେହି ନୋହିବା ବିମନ ॥
ବରଜାତି ହୋଇ ତାକୁ ବଶ ଯେ କରାଇ ।
ନିଜ ରାଜ୍ୟରେ ଗୁଡ଼ିବା ଛନ୍ଦକୁ ଧରାଇ ॥
ଉଚ୍ଚାରି ଏମନ୍ତ ସତ୍ୟ ସକଳ ଯେ ବୀରେ ।
ନାନା ପୁଷ୍ପ ଚଢ଼ାଇଲେ ଗୋପେଶ୍ୱର ଶିରେ ॥
ଜାତି ଯୂଥି ସେବତୀ ମାଳତୀ ରଙ୍ଗବାଣ ।
କନିଅର ମଲ୍ଲି କୁନ୍ଦ କୁମୁଦ କଞ୍ଚନ ॥
ତରାଟ ତଗର କୁରୁଣ୍ଟକ ନାଗେଶ୍ୱର ।
ଚମ୍ପକ ବକୁଳ କୁଆଁଅନା ଇନ୍ଦୀବର ॥
ନିଆଳି ମାଲତୀ ଗଙ୍ଗଶିଉଳୀ କମଳ ।
ଗଇସ ଦୁଦୁରା କ ଟାଠଲୀ ନୀଳୋତ୍ପଳ ॥
ପୁନ୍ନାଗ ରଙ୍ଗଣୀ କେତ୍କି ତୋଷେ ଚଢାଇଣ ।
ଏକେକ ଏକେକ ଫୁଲ ଦେଲେ ମନେ ମନାସିଣ ॥

ଯାହା ପୁଷ୍ପ ବୃଷଭ ଶିରରେ ହେବ ଆସି ।
ତାହାର ରମଣୀ ଏ ହୋଇବ ନୃପଶିଷୀ ॥
ଏମନ୍ତ ଭାବରେ ନାନା କୁସୁମ ଚଢ଼ାଇ ।
ଗ୍ରାମୁନରେଶ ଉଭା ହୋଇ ମାନସ ବଢ଼ାଇ ॥
ଏମନ୍ତେ ସେ ପୂଜାବିଧି ଉତ୍ସବ ସମ୍ଭାରେ ।
ରାଜାଗଣ ଚନ୍ଦ୍ରଶେଖର ଆରମ୍ଭରେ ॥
ଏକ ଲୟ କରି ସର୍ବେ ନୟନ ନିବେଶି ।
ପୂଜା ଅନ୍ତେ ଶିରରୁ ରଜତଚନ୍ଦ୍ର ଖସି ॥
ବୃଷଭ ଶିରରେ ଜ୍ୟୋତିର୍ମୟ ପ୍ରକାଶଇ ।
ଆହାଲ୍ଲାଦେ ସର୍ବ ଶିର ଦେବଙ୍କୁ ନାଶଇ ॥
ବାହୁହୁନ୍ଦ ଛନ୍ଦ ଶୀତେ ଦନ୍ତୁରୀ କମ୍ପଇ ।
ଗୋପେଶ୍ୱର ଗୋପେଶ୍ୱର ଭବ୍ୟେ କେ ଜପଇ ॥
ମୃଗମଦେ ବଚନ ଚନ୍ଦ୍ରରେ ବର୍ଣ୍ଣାବଳୀ ।
ପଢ଼ନ୍ତି ଉତ୍ତମଶ୍ଳୋକ ସର୍ବଜନ ମିଳି ॥

(ଶ୍ଳୋକ)

ଶ୍ରୀକୃଷ୍ଣୋ ମଧୁରୋ ମୂର୍ତ୍ତି
ଗୋକୁଳେ ନନ୍ଦନନ୍ଦନଃ ।
ପୀତାମ୍ବର ଶ୍ଚତୁରଗଃ
ସ ରାଧା ପ୍ରାଣ-ବଲ୍ଲଭଃ ।

ଶ୍ରୀକୃଷ୍ଣ ମଧୁର ମୂର୍ତ୍ତି ଗୋକୁଳ ନଗରେ ।
ନବଘନ ମୋହନ ସୁନ୍ଦର ମର୍ତ୍ତ୍ୟରେ ॥
ନନ୍ଦରନନ୍ଦନ ପୀତାମ୍ବର ବନମାଳ ।
ବେଣୁ ଶିଙ୍ଗି ପୁଚ୍ଛ ରାଧା-ବଲ୍ଲଭ ଯେ ମୂଳ ॥
ବେଭୁଆ ସେବକ ଗ୍ରାମୁ ଗହଳ ଛଡ଼ାଇ ।
ଏକ ଆରକରେ ସେହି ଶ୍ଳୋକଙ୍କୁ ପଢ଼ାଇ ॥
ପଢ଼ିଣ ଆଶ୍ଚର୍ଯ୍ୟ ମନ ପାଇ ରାଜାଗଣ ।
ଯାର ନାମ ନିହ୍ନ ଶିବ ଶିରରେ ଭୂଷଣ ॥
ତାର କଥା କେବାକୁ କେ ହେବ ମନୋରଥ ।
ଏତେ ବୋଲି ଯେ ଯାହାର ଗଲେ ନରନାଥ ॥
ସେହିକାଳେ ଏମନ୍ତ ଅଛଇ ମୁହିଁ ଜାଣି ।
ଶୁଣି ତହିଁ ଏମନ୍ତ ଚମ୍ପକଲତା ଭଣି ॥
ବଚନ କହିଲେ ଯାହା ସତ୍ୟ ସେ ବଚନ ।
ଅଭିମନ୍ୟୁ କନ୍ୟା ସେବେ କଲେ ତେବେ ଦାନ ॥
ଦୁଷ୍ଟ ରାଜାଗଣ ଶୁଣି ହେଲେ ବେଗେ ମେଳ ।
ବଳେ ନେଇଯିବା ଏ ସୁବର୍ଣ୍ଣରତ୍ନମାଳୀ ॥
ଶୂନ୍ୟରୁ ଶବଦ ଯେ ଶୁଭିଲା ଅଦ୍ଭୁତ ।
ଗୋପେଶ୍ୱର କୋପାନଳେ ହେବ ଭସ୍ମୀଭୂତ ॥
ମହାମତ୍ତ ମଦଚକ୍ର ସବେ ଯିବ ନାଶ ।
ଶୁଣି ସର୍ବ ଦୁଷ୍ଟ ରାଜା ବାହୁଡ଼ ନିରାଶ ॥
ରଙ୍ଗଦେବୀ ବୋଇଲେ ସେକାଳ କଥା ପଛ ।
ପୌର୍ଣ୍ଣମାସୀ ଦେବୀ ଯାହା କହିଲେ ପ୍ରତ୍ୟକ୍ଷ ॥
ଭୂତ ଯେ ଭବିଷ୍ୟ ବର୍ତ୍ତମାନ ଏହୁ ଜାଣେ ।
ତହିଁକି ସଂଶୟ ଯେ କରିବା ଅକାରଣେ ॥
ସୁଦେବୀ ବୋଲନ୍ତି ନିଶ୍ଚେ ଯେହୁ ଗୋ ଯାହାର ।
ବେଳକାଳେ ବିଧି କରେ ମିଳନ ତାହାର ॥
ଉତ୍ତମ ଯେ ଦ୍ରବ୍ୟ ସେ ଉତ୍ତମଜନେ ଭୋଗ ।
ଶବରେ ମାଣିକ୍ୟ ଥିଲେ ଦେବତାଙ୍କୁ ଯୋଗ୍ୟ ॥
ସିନ୍ଧୁ ମନ୍ଥନୁ ଯେ ସୁଧା ଅସୁରେ ପାଇଲେ ।
ଶ୍ରମ ତାହାଙ୍କର ଏହା ଦେବତା ଖାଇଲେ ॥
କୃପଣ ଯେ ଧନ ପାଇ ଯେସନେ ରଖିଥାଇ ।
ଯାହାର ଯେ ଧନ ତାକୁ ବିଧି ବଳେ ଦେଇ ॥
ନିଶ୍ଚୟ କୃଷ୍ଣର ରାଧା ଭେଦ ଏଥି ନାହିଁ ।
ନୋହିଲେ ଏହାର ମନ ଏଡ଼େ ଉଚ୍ଛା କାହିଁ ॥
ତୁଙ୍ଗବିଦ୍ୟା ବୋଇଲେ ଏ ଚନ୍ଦ୍ରମଣି ବଡ ।
କେବଳ ଚନ୍ଦ୍ରକୁ ଦେଖି ହୁଏ ଦ୍ରବୀଭୂତ ॥
ମୂର୍ତ୍ତିମନ୍ତ କନ୍ଦର୍ପ ସାକ୍ଷାତେ ବିଜେ କଲେ ।
ତେବେହେଁ ଯେ ଶକ୍ତ ତାର ନ ବଳବ ଭଲେ ॥
ଆମ୍ଭେମାନେ ପ୍ରସଙ୍ଗେ କହିଲେ କାନ୍ତ ରସେ ।
କାମକଳା ସଙ୍ଗୀତରେ ମନ ତା ନ ରସେ ॥
ଏବେ ନିଜ କାନ୍ତ ପାଦ ସଙ୍କେତ ଛନ୍ଦରେ ।
କାହାକୁ ନ କହି ସେହି ଭାବନା ଅନ୍ତରେ ॥
ଦରିଦ୍ର ପାଇଲେ ଧନ ଯେସନେ ତା ଲୁଚଇ ।
ଲଜ୍ଜ୍ୟ ବିଷୟ କରାଇ ଲୋକଙ୍କୁ ବଞ୍ଚାଇ ॥
ନ ପୂଣ ଜାଣିଲେ ଧର୍ମ ପଡ଼ଇ ପ୍ରମାଦ ।
ସେହିରୂପେ ରାଧିକା ଆମ୍ଭରେ କଲେ ଭେଦ ॥
ଶୁଣି ଚନ୍ଦ୍ରରେଖା ଯେ ବୋଲଇ ଆଗୋ ସଖି ।
ତାର ମନୋରଥକୁ ଉପାୟ କର ଦେଖି ॥

ଆମ୍ଭେ ଥାଉଁ ଥାଉଁ ଏତେ ଅବସ୍ଥା ହେଉଛି ।
ବିଷମ ମଦନ-ବାଣ ହୃଦୟ ଦହୁଛି ॥
ଆମ୍ଭ ଜାଣିଥିବା ଆଉ କେବଣ କାରଣ ।
ଜେମା ଦୁଃଖେ ଦୁଃଖୀ ଯେ ସକଳ ସଖୀଗଣ ॥
ଏମନ୍ତେ ସାନ୍ନିଧ୍ୟେ ବସି ପୁଚ୍ଛନ୍ତି ବିଶ୍ୱାସେ ।
କେବଣ କାରଣେ ଚିନ୍ତା କରୁ ତୁ ମାନସେ ॥
କିସ ମନୋରଥ ତୋର ଆମ୍ଭ ଆଗେ କହ ।
ତୋର ଦୁଃଖ ଦେଖି ନ ରହଇ ଆମ୍ଭ ଦେହ ॥
ଅନ୍ତର ନ ରଖି ଚିତ୍ତେ ଲଜ୍ଜାକୁ ନ ରଖି ।
କିପାଁ ଏତେସର ସ୍ୱରୂପ ଯେ କହ ସଖି ॥
ତନୁ ଖିନ୍ନ ଚିନ୍ତାଭରେ ଲୋତକ ପକାଉ ।
ଅକଳଙ୍କ ପୂର୍ଣ୍ଣଚନ୍ଦ୍ର ବଦନ ଶୁଖାଉ ॥
କିସ ଅପୂର୍ବ ତୋତେ ନ କହୁ ତ ଫେଡ଼ି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଥିଲେ ଦେବୁଁ ଲୋଡ଼ି ॥
ଶୁଣି ରାଧା ବୋଲନ୍ତି ଗୋ ଶୁଣ ପ୍ରାଣସଖି ।
କୁଳାଙ୍କୁର ହୋଇ ବ୍ରତ ନ ପାଳିଲ ରଖି ॥
ଯେବଣ ପୁରୁଷ ପାଦଚିହ୍ନକୁ ଦେଖିଲି ।
ଆପଣା ଇଚ୍ଛାରେ ଚିତ୍ତ ତହିଁରେ ରଖିଲି ॥
ଚିତ୍ରପଟେ ଚିତ୍ରା ଲେଖିଥିଲେ ଯେଉଁ ରୂପ ।
ଦେଖିଲା ମାତ୍ରକେ ବାଧା ହୋଇଲି କନ୍ଦର୍ପ ॥
ଆଜ ରଜନୀରେ ସ୍ୱପନରେ ସେ ପୁରୁଷ ।
ପାଶେ ବସି ଉରେ କର ଦେଲେ ମୃଦୁହାସେ ॥
ଉଠିଣ ଚାହିଁଲି ଚଉଦିଗେ କେହି ନାହିଁ ।
ତେବେକ ଧଇର୍ଯ୍ୟ ବୁଦ୍ଧି ଘେନିଗଲେ ସେହି ॥
ବୃନ୍ଦା ତହୁଁ ଶୁଣିଲି କୁମର ଗୁଣକର୍ମ ।
ତେତେବେଳୁଁ ଚିତ୍ତରେ ହୋଇଲା ସଖୀ ଭ୍ରମ ॥
ପଞ୍ଚସ୍ୱରେ ମଧୁର ମୁରଲୀ ବାଏ ଯେହୁ ।
ସର୍ବଦା ମୋ ହୃଦୟୁ ତରଳ କରେ ସେହୁ ॥
ଏତେ କଥାରେ ଯାହାର ଅନୁରାଗ ବଢ଼େ ।
ରହେ କି ସେ ବିରହିଣୀ ଲୋହାର ଉହାଡ଼େ ॥
ଏ ପାଞ୍ଚ କଥାରେ ସଖି ବଳିଲା ମୋ ଚିତ୍ତ ।
ଧରି ନ ପାରଇ ଦେହ କହୁଅଛି ସତ୍ୟ ॥
ବିଷ ସୁଧା ଦୁଇରୁ କଥାଏ ମୋତେ ଦିଅ ।
ଏତେ କହି ମଉନ ସେ ବୃଷଭାନୁ ଝିଅ ॥

ବୋଲନ୍ତି ସଜନୀ ଶୁଣି ନୃପତିଦୁହିତ ।
ଏ ପାଞ୍ଚ ଲକ୍ଷଣ ଯେ ଟି ନନ୍ଦରାଜାସୁତ ॥
ସେ ତୋହର ପ୍ରାଣନାଥ ପୌର୍ଣ୍ଣମାସୀ ଆଜ୍ଞା ।
କାହାର ବା ବଳ ତାହା କରିବ ଅବଜ୍ଞା ॥
କରିବା ବିଧାନ ସଖି ଥୟ କର ଦେହ ।
ନିଶ୍ଚୟ ଲଭିବୁ କାନ୍ତ ଆତୁର ଯେ ନୁହ ॥
ମନକୁ ସମ୍ଭାଳ ସଖି ଧଇର୍ଯ୍ୟରେ ଥିଲେ ।
ପ୍ରାଣନାଥ ସଙ୍ଗରେ ମିଳାଇବୁଁ ଭଲେ ॥
ଅବୋଧ ନାୟିକା ଅଙ୍ଗେ ବୋଧ ନ ଭେଦଇ ।
ନନ୍ଦସୁତ ଗୁଣ କର୍ମେ ମନ ତା ଖେଦଇ ॥
ଜେମା-ଦେହ ଦୁଃଖ ଦେଖି ସକଳ ଯେ ଆଳୀ ।
ବୟସେ ଅଧିକା ଯେ ଦୂତିକା ନାମେ ବାଳୀ ॥
ତାହାକୁ ସାନ୍ନିଧ୍ୟେ ରାଇ ଗଉରବ କରି ।
ଧନ ବସ୍ତ୍ର ଅଳଙ୍କାର ଶରୀରରେ ଭରି ॥
ବିଶ୍ୱାସ କହିଲେ ତାଙ୍କୁ ପେଶି କୃଷ୍ଣ ପାଶେ ।
କେମନ୍ତ ଚରିତ ତାଙ୍କ ଚିତ୍ତ କାହିଁ ରସେ ॥
ଜେମାନଙ୍କ ରୂପ କାନ୍ତି ଶୁଣି କି ନାହାନ୍ତି ।
ଗୋବତ୍ସ ଚରାଇ କେଉଁ ସ୍ଥାନରେ ଥାଆନ୍ତି ॥
କେତେ ବଡ଼ ସାହସ ପାରିବ ଟିକି ଭେଦ ।
ଦଣ୍ଡ ଭେଦ ଶାମ ଆଦି ଜାଣିବ ସମ୍ବାଦ ॥
ଶୁଣି ଦୂତୀ କହଇ ଯେ ମଧୁର ଉତ୍ତର ।
ରସିକ ନାଗରବର ସେ ନନ୍ଦକୁମର ॥
ପୂର୍ବ ପୁଣ୍ୟ ପ୍ରକାଶ ହୋଇଲା ଏତେ ଦିନେ ।
କର୍ଣ୍ଣେ କଥା ଶୁଣି ରୂପ ଦେଖିବ ନୟନେ ॥
ଏତେ କହି ହରଷରେ ଚଳିଲେକ ଦୂତୀ ।
ସୂର୍ଯ୍ୟପୂଜା ସ୍ଥଳେ ବନେ ନୃପତି ଦୁହିତା ॥
ବନେ ପୁଷ୍ପ ତୋଳି କୃଷ୍ଣରୂପ ଅନୁସରେ ।
ତମାଳ ତରୁକୁ ଦେଖି ଚାହିଁଇ ସଧୀରେ ॥
ମୟୂର ମଣ୍ଡଳେ ଶିଖୀ ନୃତ୍ୟକୁ ଦେଖଇ ।
ହରିଣୀ ପଳରେ କୃଷ୍ଣସାର ନିରେଖଇ ॥
ନବଘନ କୋଳେ ଦେଖି ବିଜୁଳିର ଲତା ।
ପୁଲକ ହୁଅଇ ଭାବେ ବୃଷଭାନୁସୁତା ॥
କାଳିନ୍ଦୀ ଜଳରେ ପଶି କରଇ ବିହାର ।
କୃଷ୍ଣର ସ୍ୱରୂପ ଭାବ ନୁହଇ ବାହାର ॥

ଯେତେ ଆଚରଣ ତାର କୃଷ୍ଣରସେ ମଜେ ।
ଲୌକିକ ଭାବରେ ସଖୀସଙ୍ଗେ ସୂର୍ଯ୍ୟ ପୂଜେ ॥
ପାଦପଦ୍ମ ଆରାଧି ବଦନେ ଅର୍ଘ୍ୟ ଦେଇ ।
ନନ୍ଦନନ୍ଦନଙ୍କୁ ପତି ପାଇବ ମାଗଇ ॥
ଜଣାଇ ବିନୟ ଭାବେ କରାଞ୍ଜଳି ହୋଇ ।
ଅମୂଲ୍ୟ ସେ ଚିନ୍ତାମଣି କରେ ପ୍ରବେଶଇ ॥
ଦେଖିଣ ହରଷ ରାଧା ବିସ୍ମିତ ଚିତ୍ତରେ ।
ଯେବେ ମଣି ପ୍ରବେଶ ତୁ ମୋହର ହାତରେ ॥
ମୋର ନିଜ ପ୍ରାଣନାଥ ହୃଦୟରେ ଲମ୍ବି ।
ଯେମନ୍ତ ସେ ପାଦପଦ୍ମ ହେବ ଅବଲମ୍ବି ॥
ସତ୍ୟ ଯେବେ ଚିନ୍ତାମଣି ମୋହରେ ପ୍ରସନ୍ନ ।
କୃଷ୍ଣଙ୍କୁ ଘେନିଣ ମୋତେ ଦିଅ ଦରଶନ ॥
ଅନ୍ତର୍ଦ୍ଧାନେ ଗଲା ମଣି ରାଧା ଆଜ୍ଞା ମାନି ।
ଶ୍ୟାମକୁଣ୍ଡ କୂଳେ ମିଳେ ଫୁଲଧନ୍ୱା ଘେନି ॥
ପୂରେ ବଜେ ବାହୁଡ଼ି ଚତୁର୍ଦ୍ଦଶୀ ଶିରୋମଣି ।
ଏଥୁ ଅନନ୍ତରେ ଶୁଣ କୃଷ୍ଣର କାହାଣୀ ॥
ଏକଦିନେ ସଖା ଘେନି ଗୋକୁଳ ସୁନ୍ଦର ।
ଗୋବତ୍ସା ଚରାଇ ପଶେ ଗହନକନ୍ଦର ॥
ମନ୍ଦଗନ୍ଧ ଶୀତେ ବହେ ମଳୟମାରୁତ ।
ବିକାଶ ପୁଷ୍ପ ଚନ୍ଦନ ସକଳ ତରୁ ତ ॥
ବୋଲନ୍ତି ଶ୍ରୀହରି ମିତ ହୋଇଲଇଁ ବଣା ।
ଏହି ବିଗ ଗହନ ତ ନ ଯାଇ କଳନା ॥
ଏକମନେ ଜନଜଣେ ତହିଁ ଚଳିଗଲେ ।
ନବଢ଼ ଲତିକା ବାଡ଼ ଯାଉଁରି ଦେଖିଲେ ॥
ପଞ୍ଜପଞ୍ଜ ଉଚ ତରୁ ଲଗି ଦେହେ ଦେହେ ।
ନିସନ୍ଧିରେ ଲତାଛନ୍ଦା ଜୀବେ ଭେଦ ନୁହେ ॥
ଘୋର ଘନ ନବଢ଼ ବିସ୍ତାର ମହାଗୂଢ଼ ।
ପଶି ନ ପାରନ୍ତି ମନ୍ତ୍ର ଅନ୍ତ ଖେଦ ବଡ଼ ॥
ବାଟ ଖୋଜି ୨ ଲମ୍ବେ କେତେଦୂର ଗଲେ ।
ଗିରିବର ଗୋବର୍ଦ୍ଧନ ତଳରେ ମିଳିଲେ ॥
ହରିବାର ଅନୁସରି ଗିରି ପରେ ଉଠି ।
ସ୍ୱର୍ଗସୁଖ ତୁଚ୍ଛ ସେ ଅମୃତମୟ ସୃଷ୍ଟି ॥
ବିବିଧ ଯେ ଲତା ତରୁ ଫଳଭରେ ଭରି ।
ବିହରନ୍ତି ନାନାପକ୍ଷୀ କୋଳାହଳ କରି ॥
ଚଉସମ ଶିଳ୍ପକଣ ପାଷାଣ ଚନ୍ଦ୍ର ପନ୍ତି ।
ସ୍ଫଟିକ ପ୍ରବାଳ ହେମ ମରକତ ଭ୍ରାନ୍ତି ॥
ମନୋରମ କମନୀୟ ସୁଷମ ସୁଶୀଳା ।
ପୀଢ଼ ବାଢ଼ ଅପସର ପଲଙ୍କ ମୁଚୁଳା ॥
ମେଢ଼ ଯେ ମଣ୍ଡପ ସିଂହାସନ ଛ ପ୍ରକାର ।
ବିଶ୍ୱକର୍ମା ନିର୍ମାଣରୁ ଅତ୍ୟନ୍ତ ସୁନ୍ଦର ॥
ନିବିଡ଼ ବିଟପୀ ଜାତି ରହିଛି ସୁସଜ୍ଜେ ।
କେହୁ ତଳ କେହୁ ମଧ କେହୁ ଅଛି ଉଚେ ॥
ଗବାକ୍ଷ ପଲ୍ଲବ ସନ୍ଧି ପବନ ଭେଦଇ ।
ସେହି ମାର୍ଗେ ମନସିଜ ନାରାଜ ସନ୍ଧଇ ॥
କୁସୁମ ବିଶିଖ ମଧୁକର ଧ୍ୱନି ଯନ୍ତ୍ରେ ।
ପିକ ଡାକ ଶବଦରେ ରତିରାଜ ମନ୍ତ୍ରେ ॥
ଲତା ତରୁ ଅଚ୍ଛାଦନେ ମନ୍ଦିର ଆକାର ।
ଦେଖିବା ମାତ୍ରକେ ଅଙ୍ଗେ ମଦନ ବିକାର ॥
ଦେଖି ବହୁ ପ୍ରଶଂସା କରନ୍ତି ବେଣୁଧର ।
ଦେଖ ଦେଖ ଧନ୍ୟ ଧନ୍ୟ ଶୋଭା ଗିରିବର ॥
ଏତେଢ଼ ସୁଖ ସ୍ଥାନେ ମିତ ଦିନେ ହେଁ ନ ଆସି ।
ବଚ୍ଛା ଚରାଇଣ ଏ ପାଷାଣେ ଥିବା ବସି ॥
ତୁମ୍ଭେ ଜାଣି କପାଇଁ ଏ ସ୍ଥାନ ନ ଦେଖାଅ ।
ନିତ୍ୟହିଁ ଯମୁନା କୂଳେ ଗୋବଚ୍ଛା ରଖାଅ ॥
ଶ୍ରୀକୃଷ୍ଣ ବଚନେ ମଧୁମଙ୍ଗଳ ଭାଷଇ ।
କନ୍ଦର୍ପ ଯେ ଦର୍ପ ଧ୍ୱଂସେ ଯେ ଏଥେ ଆସଇ ॥
ତୁଚ୍ଛାକୁ ଆଶ୍ୱିରନାରୀ ସଙ୍ଗରେ ଗୋଡ଼ାଅ ।
ମନମଥ-ନାବ କାମସାଗରେ ବୁଡ଼ାଅ ॥
ଏଥିରେ ତ ଦିବ୍ୟ ନାରୀମାନଙ୍କ ବିହାର ।
ଭେଟ ପଡ଼ିଲେ କେ ତୋତେ କରିବ ବାହାର ॥
ପିତାର ଆଦେଶ ନାହିଁ ଅଇଲ ଏ ଗିରି ।
ଶୁଣି କୃଷ୍ଣ ମନେ ହସି କରେ କର ମାରି ॥
ଭୋ ମିତ ଏ ବନେଶ୍ୱରୀ କଲ ଦରଶନ ।
ଏହୁ ଗିରିବରକୁ କରିବା ଆରାଧନ ॥
ଠାବେ ଠାବେ ବୁଲିଣ ଦେଖନ୍ତି ଜନଜଣ ।
କାହିଁ ରହି କାହିଁ ଶୋଇ କାହିଁ ବିହରଣ ॥
ଫୁଲ ତୋଳି ମାଳା ଗୁନ୍ଥି ହୃଦରେ ଲମ୍ବାଇ ।
ସ୍ୱାଦୁଫଳମାନ ତୋଳି ଭୁଞ୍ଜି ସୁଖ ପାଇ ॥

ଅମୃତ ସମାନ ଫଳ ସ୍ଫଟିକ ଚଉକା ।
ସ୍ନାନ ପାନ କରି ସୁଖ ବଢ଼ଇ ଅଧିକା ॥
ସୁବାସିତ କୁସୁମ ଯେ ପଡ଼ଣେ ଖସନ୍ତି ।
ନିଜ ଅଙ୍ଗ ଢଳ ଢଳ ଜଳରେ ହସନ୍ତି ॥
କେତେବେଳେ ଉଚ୍ଚପୀଢ଼ ଚଉସମ ଉଠି ।
ହରି ବାରି ସ୍ଥାନେ ସ୍ଥାନେ ଦେଖାଇ ଅଙ୍ଗୁଷ୍ଠି ॥
ତହିଁ ମଧ୍ୟେ ରାଧାକୁଣ୍ଡ ବନ ଶୋଭା ଦେଖି !
ମନ ଯେହ୍ନ ନିଶ୍ଚଳ ହୋଇଲା ତହିଁ ଆଖି ॥
ପାରେଇକି ଦେଖି ଯେସନ୍ତେ ପାରାବତ ଖସି ।
ସେହିରୂପେ କୂଳରେ ମିଳିଲେ ହରି ଆସି ॥
ତରୁଲତା ଉହାଡ଼ରେ ନ ପାରିଲେ କଳି ।
କେତେଦୂରେ ବନରେ ଶୁଭଇ ହୁଳହୁଳି ॥
ଶ୍ରବଣ ଡେରିଣ ଶୁଣି ଅନୁସରି ଚଳେ ।
ପଥ ପାଇ ପୁଳିନ୍ଦ ପଲ୍ଲୀରେ ଯାଇ ମିଳେ ॥
ଭ୍ରୂଭଙ୍ଗି ମଲ୍ଲିକା ଦୁଇ ପୁଳିନ୍ଦ କୁମାରୀ ।
ମୋହନ ମୂରତି ଚାହିଁ ମଦନରେ ଧାରି ॥
ଅଳସୀ ହୋଇଣ ତରୁ ଅବଲମ୍ବି ରହେ ।
ମନ ମତ୍ତ ନୟନ ସହିତେ କୃଷ୍ଣ ଦେହେ ॥
ଅମୃତ ଆପ୍ୟାନ କରି ଦେବଦୃଷ୍ଟି ହୁଏ ।
ହୃଦପଦ୍ମେ ଭାବଣି ବିଳାସେ ସୁଖ ପାଏ ॥
ଦେଖିଣ ସୁବଳ ମଧୁମୃଦୁବାଣୀ ଭାଷି ।
ରୂପ ଗୁଣେ ସୁନ୍ଦର ଯେ ବେନି ଶୁଭ୍ରକେଶୀ ॥
କି ଅବା ସ୍ୱର୍ଗର ତୁମ୍ଭେ ବିଦ୍ୟାଧରୀ ଅଟ ।
କେବଣ ଦେଶରେ ଘର କାହା ପାଦେ ଖଟ ॥
ବୋଲନ୍ତି ଶବରସୁତା ଶୁଣ ହେ ସୁନ୍ଦର ।
କେବଣ କାରଣେ ବୁଲ ଏ ବନକନ୍ଦର ॥
ଅପୂର୍ବ ମୋହନରୂପ ଦେଖି ନାହୁଁ ଏଥେ ।
କୋମଳ ଚରଣ ବ୍ୟଥା କରିବ ଏ ପଥେ ॥
ପୁଳିନ୍ଦନନ୍ଦନୀ ବେନି ଭଗିନୀ ଯେ ଅଟୁଁ ।
ଇନ୍ଧନ ପଲ୍ଲବ କୋଳି ମଧୁ ନେଇ ଖଟୁଁ ॥
କାହାରିହିଁ ନୋହୁଁ ଆମ୍ଭେ ବୃନ୍ଦାଦେବୀ ଦାସୀ ।
ତାହାଙ୍କ ଚରଣେ ସେବି ଏ ବନେ ବିଳସି ॥
କାହାର କୁମର ଏଥିଁ କମ୍ପାଇ ଅଇଲ ।
କୋମଳ ଲଳିତ ତନୁ ଦୁଃଖ ଯେ ପାଇଲ ॥

ଶୁଣି ମଧୁମଙ୍ଗଳ ବୋଲନ୍ତି ଆଦରେ ବାଳୀ ।
ଏ ନନ୍ଦନନ୍ଦନ ଯୁବା-ଯୁବତୀ-ସଙ୍ଗାଳି ॥
ରସିକ ନାଗରବର ରସେ ପରିପୂର୍ଣ୍ଣ ।
ମଦନବର୍ଦ୍ଧନ ପୁଷ୍ପବାଣ କରେ ଚୂର୍ଣ୍ଣ ॥
ବନ ଶୋଭା ଦେଖିଣ ଯେ ଏଥକୁ ଅଇଲୁ ।
ବଶା ହୋଇ ଯୋଗେ ତୁମ୍ଭ ଭେଟକୁ ପାଇଲୁ ॥
ଗିରି ତଟେ ଉଠି ଯେ ଅଇଲୁ ତିନିଜଣେ ।
ହୁଳହୁଳି ଯନ୍ତ୍ରବାଦ୍ୟ ଶୁଭୁଅଛି ଏଣେ ॥
ବୋଲଇ ଭ୍ରୂଭଙ୍ଗୀ ଏହୁ ବୃନ୍ଦାଦେବୀ ସ୍ଥଳ ।
ଦେବଗଣେ ଦୁର୍ଲଭ ମନୁଷ୍ୟେ କାହିଁ ମେଳ ॥
ତାଙ୍କ କୃପା ନ ଥିଲେ କେ ଏଥିଁ ପଶି ପାରେ ।
ଜାଣିଲି ସୁଦୟା ଦେବୀ କରନ୍ତି ତୁମ୍ଭରେ ॥
ଉଦ୍ଭବ ଆନନ୍ଦନାଦ ଅନେକ ଶୁଭଇ ।
ଏତେ ବୋଲି ସୁନ୍ଦରୀ ଯେ ଚରଣେ ନମଇ ॥
ଗୋପୀ-କୁଚକୁଙ୍କୁମଚନ୍ଦନ ପଙ୍କ ପାଦ ।
ତୃଣେ ଲଗି କୁଚସଙ୍ଗୀ ଛେଦେ କାମଖେଦ ॥
ନାନା ସ୍ୱାଦୁଫଳ ଆଣି ଭାବେ ସମର୍ପିଲେ ।
ସୁବାସିତ ପୁଷ୍ପମଧୁ କନ୍ଦମୂଳ ଦେଲେ ॥
ଭ୍ରୂଭଙ୍ଗୀମଲ୍ଲିକା ଭାବେ ଅଙ୍ଗୀକାର କଲେ ।
ପ୍ରୀତିବଶେ ତରୁତଳେ କ୍ଷଣେ ବିଶ୍ରାମିଲେ ॥
କୁମାରୀମାନଙ୍କୁ ଘେନି ତହୁଁ ଗଲେ ଚଳି ।
କେତେବେଳେ କଖଟୀ ବାନରୀ ଆସି ମିଳି ॥
ପୂର୍ବ ଅବଲୋକ ଲୋକେ ଚାହିଁଇ ନିରେଖି ।
ଡାଳେ ଡାଳେ ଡେଇଁଣ ହୁଅଇ ଖି, ଖି, ଖି ଖି ।
ସୁବଳ କହଇ କୃଷ୍ଣ କରି ନିଉଛୁଇ ।
ପୂର୍ବେ ଏହିଠାରୁ ଆମ୍ଭେ ବାହୁଡ଼ି ଅଛଇଁ ॥
ତେବେ ଏହି ମକରଟୀ ଉଗାଳି ଯେ ଥିଲା ।
ଏବେ ପୁଣ ସ୍ୱାଭାବିକ ବିକାର ବହିଲା ॥
ଦେଖି ମଧୁମଙ୍ଗଳ ଯେ ମଧୁ ଫଳ ଥୋଇ ।
ଭ୍ରୂଭଙ୍ଗୀ ମଲ୍ଲିକା ମଲ୍ଲୀମାଳକୁ ଲମ୍ବାଇ ॥
ପାଇଣ ସନ୍ଦେଶ ମନେ ବାନରୀ ଉଲ୍ଲାସ ।
ଆଗେ ବାଟ କଢ଼ାଇଣ ମନରେ ହରଷ ॥
ବୋଲନ୍ତି ମୋହନ ତୁମ୍ଭେ ଶୁଣ ପ୍ରାଣସଖା ।
ଏହୁ ବନନାୟିକା କରାଅ ମୋତେ ଦେଖା ॥

ଶୁଣୁଥାଇ ଏହ୍ନୁ ବନ ନ ପାରନ୍ତି ଶୋଧି ।
ଏତେକାଳେ ସମ୍ମୁଖ ହୋଇଲା ଅଛି ବଧି ॥
ପୂର୍ବେ ତୁମ୍ଭ ତହୁଁ ଶୁଣି ଉତ୍ସାହ ବଳାଇ ।
ଏହୁଯାଏ ଆସିଣ ସେ ଗଲକ ଲୋକ ॥
ଯେହ୍ନୁ ଭଙ୍ଗାଇଲ ସେହ୍ନୁ ଏବେ ଦରସନ୍ତ ।
ଯାହା କହିଥିଲ ତାହା ହେବ ଦରଶନ ॥
ବୋଲେ ବଟ ହର ଅଟ୍ କାମିନୀ ଲମ୍ପଟୀ ।
ତୋହ ସଙ୍ଗେ ଥିଲେ ଥାଇ ସକଳ ଅରିଷ୍ଟି ॥
କାର୍ଯ୍ୟ ଲଭି ଉପକାର କେହିହିଁ ନ ମାନୁ ।
ଯୋଗେଣ ଭଳିଲେ କଥା ମିଛବୋଲି ଜେନୁ ॥
ପୁଅଙ୍କୁ ଡିହାଇ ମେଳ ଲଗାଇ ସଙ୍ଗରେ ।
ଏବେ କପଟ ବୋଲୁ ପଥ କଢ଼ାଅ ଆଗରେ ॥
ଶୁଣି କୃଷ୍ଣ ଈଷିତେ ଚରଣେ କର ଦେଇ ।
ଗୁପତ ମରମ ସେ ପ୍ରକାଶ ତୁମ୍ଭେ ଦୁଇ ॥
ଭୁଜେ ଭୁଜ ଭିଡ଼ି ବଟ ବୋଲେ ମଲି ମଲି ।
କଖଟୀ ବାନରୀ ଗତ ପଥେ ଆଗେ ଗଲ ॥
ଗହନ ସେ ଲତା ତରୁ ଗମେ ବାଙ୍କେ ବାଙ୍କେ ।
ସେଠାରୁ ଲେଉଟି ଚଳେ ଗତପଥେ ଥୋକେ ॥
କଣ୍ଟକୀ ନୂପୁର ଭିତରେ ପଶିଲେ ।
ବନ ଶୋଭା ଦେଖିଣ ବହୁତ ପ୍ରଶଂସିଲେ ॥
ବୃନ୍ଦାବନ ଗୃହଯୁକ୍ତ ଯାର ଗୃହକୋଶ ।
ଅପୂର୍ବ ମୋହନ ବନ ବୃନ୍ଦାଦେବୀ ବାସ ॥
ପଟାନ୍ତର ଦେବା କ ନନ୍ଦନ-ବନ ଜଣି ।
ପୁଷ୍ପ ଗନ୍ଧ ଆମୋଦରେ କୃଷ୍ଣ ମନ କଣି ॥
ଠାକୁରାଣୀ ଶ୍ରୀଅଙ୍ଗ ପରଶେ ଲତା ତରୁ ।
ସ୍ପରଶୁଁ ଉତ୍ସାହ କେହ୍ନୁ ତାହା କହିପାରୁ ॥
ନବାଙ୍ଗନା ଆଗମନେ ନାୟକ ଯେସନ ।
ମଦନମୋହନ ମନ ଉଦ୍ଧତ ତେସନ ॥
ସମତୁଲ ଅବନୀ କର୍ପୂର ଧୂଳିରଜ ।
ବିଶାଳ ବିସ୍ତାର ନବଦଳ ଅବନୀଜ ॥
ତମାଳ ରସାଳ ଶାଳ ଅଶନ ଅଁଳା ।
କୁମ୍ଭୀ କେନ୍ଦୁ କଦମ୍ବ ସେ କନ୍ଦା କଦଳା ॥
ପୁନ୍ନାଗ ନାରଙ୍ଗ ନାଗେଶ୍ୱର ନାଗବାଲ୍ଲୀ ।
କରମଙ୍ଗା କଞ୍ଚନ କନକ କୁରୁଚିବାଳୀ ॥

ବକୁଳ କପିତ୍ଥ କୋବିଦାର କଳ୍ପତରୁ ।
ପାରିଜାତ ଅଗୁରୁ ଚନ୍ଦନ ଦେବଦାରୁ ॥
ପାଳଧୂଆ ବେଲ ସେ ମହୁଲ ଚମ୍ପ୍ର ଚମ୍ପ୍ର ।
କରଞ୍ଜ ହିଞ୍ଜଳ କଆ ଜଳ କଣ୍ଟ କଣ୍ଟ ॥
ଲେମ୍ବୁ ଜମ୍ବ ମାତଙ୍ଗ ପୁନ୍ନାଗ ଧାଡ଼ି ଧାଡ଼ି ।
ତାଳ ଗୁର ଖଜୁରୀ ନଡ଼ିଆ ବାଡ଼ି ବାଡ଼ି ॥
ବାସଙ୍ଗ ଲବଙ୍ଗ ଗଙ୍ଗଶିଉଳି ଶିମିଳି ।
ଜମ୍ବିଲ ଜମ୍ବୁ ସେଉଠ ବଟ ସେ ପାଟଳୀ ॥
ପିଆଶାଳ ବେତ ସେ ପନସ ମାଳ ମାଳ ।
କାନ୍ଧ କାନ୍ଧ ଉଆଉ ଲେମ୍ବୁ ସେ ମହାକାଳ ॥
କୁସୁଅନା ଚଣ୍ଡିଅନା ସଜନା ସୁନାରି ।
ଜାଈଫଳ ଅଳାଇଚ ମରିଚ ଗମ୍ଭାରି ॥
ରୁଦ୍ରାକ୍ଷ ଦାରାକ୍ଷ ପୁଣି ଗୁନ୍ଦୀଆ ଦୁଲ୍ଲିରି ।
ଅଶୋକ ବଶୋକ ଚମ୍ପା ରମ୍ଭା ଗଭରଗଭ ॥
ହରଡ଼ା ବାହାଡ଼ା ଯେ ଆମ୍ବଡ଼ା ନରକୋଳି ।
ଚନ୍ଦ୍ରକ୍ଷୀର ଭଇଞ୍ଚ ଯେ ସଡ଼ପ ପିପ୍ପଳି ॥
ଧଣିଆ ଜୁଆଣି ଜିରା ମେଥି କୋଠି କୋଠି ।
ଫୁଲବନେ ମରୁଆ ଦଅଣା ପଟିପଟି ॥
ଜାଈଯୂଥି ସେବତୀ ମାଳତୀ ଛନ୍ଦାଛନ୍ଦ ।
ଜାହ୍ନୁଲି କୁମୁଦକୁନ୍ଦ ମଲ୍ଲି ମନ୍ଦାମନ୍ଦ ॥
ତଗର ତରାଟ ନବମାଳିକା ରଙ୍ଗଣୀ ।
ବାଧୁଲି ମନ୍ଦାର କେତକୀ କେ କହୁ ଅଗଣି ॥
ମାଧବୀ ଅଙ୍କାଳିରେ ସ୍ତବକ କେଣ୍ଡି କେଣ୍ଡି ।
ଥୋପି ଥୋପି କୁରୁଣ୍ଟକ ହୋଇଅଛି ମଣ୍ଡି ॥
ଦାଡ଼ିମ୍ବ ପାଚିଲା ଫାଟିଅଛି ଶୁକ ଖାଉଁ ।
ନାନା ଜନ୍ତୁକ ସେ ଦେଖନ୍ତି ଯାଉଁ ଯାଉଁ ॥
ଶ୍ୱେତଶାଖା କୁଞ୍ଜେ ବସି ଗୁହାଁଇ ନିଃଶଙ୍କେ ।
ପହଣ୍ଡ ପଞ୍ଚଶର ପୋଇ ବାଙ୍କେ ବାଙ୍କେ ॥
ତରୁଡାଳେ ନେପାଳି ସେ ମୂଧା ଥିଲା ବସି ।
ଦେଖିବା କ୍ରୀଡ଼ାରେ ସେ ମର୍କଟ ତଳ ଖସି ॥
ନୀଳକଣ୍ଠ ଦେଖି ନବଗେ ନାଟ ଆରମ୍ଭିଲେ ।
ନାନା ପକ୍ଷୀ କୋଳାହଳ ମଙ୍ଗଳ ସୁଚିଲେ ॥
ଦାରୁଷ ଉପରେ ବସି ଘୋଷଇ ସାରିକା ।
ଜୟ ଜୟ ଗାନ୍ଧର୍ବିକା ଜୟ ଶ୍ରୀ ରାଧିକା ॥

ଶୁଣି କୃଷ୍ଣ ମଧୁମଙ୍ଗଳରେ ପ୍ରଶଂସଇ ।
ପୂର୍ବେ ଯାହା କହିଥିଲ ସାରିକା ଭାଷଇ ॥
ଏହି ବନେ କଥାଏ କଥାଏ ଭେଟିଅଛୁ ।
ଭାଗ୍ୟବଳେ ଯୋଗବଳେ ଭେଟିବ ମୃଗାକ୍ଷୀ ॥
ଯେବଣ ଯେ ଚତୁଲତା ତଳେ ଯାଇଁ ମିଳ ।
ପ୍ରଣତ ଚରଣେ ପୁଷ୍ପ ବରଷି ମଙ୍ଗଳ ॥
କୃଷ୍ଣଙ୍କୁ ଦେଖାଇ ମଧୁମଙ୍ଗଳ କହଇ ।
ଦେଖ ଚତୁଲତା ଅନୁରାଗ ବରଷଇ ॥
ଝଙ୍କାର କରଇ ଅଳୀ ମଲ୍ଲିକା ପରେ ।
ଜାଣି ତୁମ୍ଭ ବିଜୟ ଯେ ଜୟଶଙ୍ଖ ପୂରେ ॥
ଏହି ବନେ ଦ୍ୱିଜଗଣ ମଙ୍ଗଳ ଭାଷନ୍ତି ।
ମଧୁଧାରା ତ୍ୟଜ ତରୁ ଆନନ୍ଦ ପାବନ୍ତି ॥
ରସାଳ ବକୁଳ ଦେଖ ଭ୍ରମର ଚାଳଇ ।
ଆଲଟ ବାଞ୍ଛଣୀ ଖଟି ପଲ୍ଲବ ଭୁଲଇ ॥
ଦେଖ ନୀଳକଣ୍ଠ ନାଟ କରେ ତୋଷଚିତ୍ତେ ।
ପୁଚ୍ଛଚକ୍ର ଟେକି ରହେ ରମଣୀ ସଙ୍ଗତେ ॥
ଦେଖ ଏହୁ ମୃଗଗଣ ନିଷ୍ଟଳେ ରହନ୍ତି ।
ତୋ ମୁଖ ଅମୃତ ସୁଖ ସୁଧାକୁ ପିବନ୍ତି ॥
ଅନୁକୂଳ ପବନ ବହଇ ଶୀତଗନ୍ଧେ ।
ତୋର ଆଗମନ ଦେଖି ସକଳ ଆନନ୍ଦେ ॥
ଦେଖ ମହୀରୁହ ତୃଣ ପୁଲକ ଯେ ହୁଏ ।
ଦେଖ ରମ୍ଭା କମ୍ପମାନ ଜରଜର କାୟେ ॥
ପୟୋଦପେଟି ପୁଷ୍ପିକୁମ୍ଭ ପୁଷ୍ପ ମାଳ ମାଳ ।
ହୁଳହୁଳ ଦିଅନ୍ତି ସକଳ ପକ୍ଷୀକୁଳ ॥
ଚଦାଳଆ ଗଛେ ଅଛୁ ଭଦାଳସ୍ୟା ପକ୍ଷୀ ।
ସବଳ ଉଦ୍ବରେ ଶଙ୍ଖଚିଲ ବସିଅଛି ॥
ଶ୍ୱେତପାରାବତଗଣ ଉଡ଼ନ୍ତି ଆକାଶେ ।
ରାଜହଂସ ପଲ ପଲ ଚଲନ୍ତି ଚୌପାଶେ ॥
ବେକ ପଦେ ଉଚ୍ଚ ହୋଇ ଗୁଳନ୍ତି ନକୁଳେ ।
କୁହୁକୁହୁ ଡାକଇ ଯେ କୋକିଳ ବକୁଳେ ॥
ଚନ୍ଦ୍ରାବଳୀ ନିଷ୍ଟ ହେଲା କହୁଅଛୁ ଏହୁ ।
ସାରିକା ବଚନେ ହରି ଶ୍ରଦ୍ଧା ଏବେ ଯହୁଁ ॥
କାଉଚୁଳ ପକାଉ ଅଛନ୍ତି ଗୃହିଁ ଗୃହିଁ ।
ଅରଖ ଶିମୁଳ ଫଳ ଫାଟି ଉଡ଼େ ଯାହା ॥

ବଟୁ ବଚନରେ ହରି ପୁଲକିତ ହୁଏ ।
ମଳୟଅନିଳ ଶୀତ ମନ୍ଦଗନ୍ଧେ ବହେ ॥
ସୁବଳ ବୋଲନ୍ତି ସବୁ ଚତୁଲତା ଗୃହିଁ ।
ନ ଫଳିବା ହୋଇ ଏଥିଁ କହ ଅଛୁ କେହି ॥
ଶ୍ରୀକୃଷ୍ଣ ବୋଲନ୍ତି ଏଥି ସବେ ଛନ୍ତି ଫଳ ।
ଏକା ମୋର କରମ ଯେ ଏଥିରେ ନ ଫଳ ॥
ବୋଲେ ବଟୁ ଯେବେ ତୁହି ବାଞ୍ଛାବଟ ଅଟୁ ।
ଆମ୍ଭ ହରି ବାଞ୍ଛାଫଳ ତତକାଳେ ଭେଟୁ ॥
ଏତେ କହି ସିଦ୍ଧ ତରୁ କଲେ ଆରାଧନ ।
କେତେଦୂରେ ଦଣିଲେ ଅପୂର୍ବ କନ୍ୟାଗଣ ॥
ଫଳପୁଷ୍ପ ପଲ୍ଲବ ଯେ ମଧୁ ସଚୟନେ ।
ବିହରନ୍ତି ବୃନ୍ଦା ଆଦି ବନଦେବୀମାନେ ॥
ଭଦ୍ରାଖ୍ୟା ଲୋହିତା ଉଣ୍ଡିରି ମହତଳ ।
ଖଦିରା ବହୁଳା ଯେ କୁମୁଦା କାମ୍ୟବାଳୀ ॥
ମଧୁମଞ୍ଜ ବୃନ୍ଦା ଆଦି ଦ୍ୱାଦଶ ଏ ସଖୀ ।
ଉପବନବନ୍ତି ଏ ଛତିଶ କନ୍ୟା ଲେଖି ॥
ସକଳ ମଧ୍ୟରେ ବୃନ୍ଦାଦେବୀ ଯୂଥେଶ୍ୱରୀ ।
ସିଦ୍ଧ ଦେହ ବହି ରାଧା ସେବା ଅନୁସରି ॥
ଠାକୁରାଣୀ ବିରହରେ ହୋଇଣ କାତର ।
କୃଷ୍ଣ ଆଗମନକୁ ହୋଇଣ ତତ୍ପର ॥
ବସନ୍ତ ପବନ ଅନୁକୂଳ ଯେ ହୋଇବ ।
ହୁଳହୁଳ ଗୀତବାଦ୍ୟ କର୍ଣ୍ଣେ ଶୁଣାଇବ ॥
ଭ୍ରୃଭଙ୍ଗ ମଲ୍ଲିକା କହି ଉତ୍ସାହ ବଢ଼ାଇ ।
କକ୍ଖଟୀ ବାନରୀ ବାଟ ଆଣିବ କଢ଼ାଇ ॥
ଚତୁଲତା ଫଳପୁଷ୍ପ ଶୁଭ ବିକାଶିବେ ।
ବନଜୀବେ ସୁସ୍ୱରେଣ ମଙ୍ଗଳ ଭଣିବେ ॥
ଏମନ୍ତେଣ ସନ୍ଧି ଭୁଳ ସଖୀଗଣ ସଙ୍ଗେ ।
ବିହରନ୍ତି ବନେ ରାଧା କୃଷ୍ଣ ଅନୁରାଗେ ॥
ନବଦଳ ଫଳପୁଷ୍ପ ମଧୁ ସମ୍ପାଦନେ ।
ନାନାଫୂଲ ତୋଳି ମାଳ ଗୁନ୍ଥନ୍ତି ଯତନେ ॥
ଚତୁଲତା ନଉଡ଼ନ୍ତି ହୁଳହୁଳ ଦେଇ ।
ଏକ ଯେଣେ ଯାଇ ତେଣେ ଆରକ ଗୋଡ଼ାଇ ॥
କେହୁ ଡାଳ ଲୁଆଇଣ କୁସୁମ ତୋଳଇ ।
କେହୁ ପକ୍ୱଫଳ ତୋଳି ଠୁଳ ଯେ କରଇ ॥

କେହୁ ହେମ ଘାଟେ କରେ ମଧୁ ଘଟପୂନ ।
କେହୁ ବସି ପୁଷ୍ପ କମ କରଇ ରଚନ ॥
ଆଲଟ ଚାମର ଛନ୍ତି ପଲଙ୍କ ପହୁଡ଼ ।
ଠାକୁରାଣୀ ଲାଗି ମାଲ କେ କରେ ନବାଡ଼ ॥
ଗଣ୍ଡବେଡ଼ା ଅଳକା ଯେ ଝୁଣ୍ଡା ଥୋପା ମଣ୍ଡା ।
ଅବତଂସ ହାରମାନ କରଡ଼ିଆ ଧଣ୍ଡା ॥
ବୃନ୍ଦାର ଆଦେଶେ ପକ୍ଷୀ ପଥେ ସ୍ଥିରେ ଜଗି ।
ଶ୍ରୀକୃଷ୍ଣ ବଦନ ଚାହିଁ ହେଲେ ଅନୁରାଗୀ ॥
ଅଜ୍ଞାତେ ସନ୍ନିଧେ ଯାଇ ହେଲେ ବେଣୁପାଶ ।
ଦେଖିଲେ ସୁନ୍ଦରୀଗଣେ ବୃନ୍ଦା ବନେଶ୍ୱଶ ॥
ନ ଚଳ ସ୍ତମ୍ଭିତେ ରହେ କମ୍ପମାନ କାୟେ ।
ବେନପାଶେ ବେନସଖୀ ଅବଲମ୍ବ ରହେ ॥
ବୃନ୍ଦା ଆଦି କନ୍ୟା ଚାହିଁ ଚମକ ପଡ଼ିଲେ ।
କେଶ ବାସ ଅସମ୍ଭାଳେ ଲତା ଉହାଡ଼େଲେ ॥
ଅନ୍ତର ହୁଅନ୍ତେ କୃଷ୍ଣ ବିଚ୍ଛେଦେ ବିହ୍ୱଳ ।
କନ୍ୟାଭାବ ଯେନ ତରୁଲତା କଲେ କୋଳ ॥
ହାହା ପ୍ରାଣସଖୀଗଣ ଏହିଠାରେ ଥିଲ ।
ମୋତେ ଦେଖି କାହିଁ ତୁମ୍ଭେ ଲୀଳା ଭଗ୍ନ କଲ ॥
ଆମ୍ଭ ଆଶୀର୍ବାଦେ ତୁମ୍ଭେ ସୁଖପ୍ରଦ ନୋହି ।
ହାହା ପ୍ରାଣପ୍ରିୟେ ମୁଖ ଲୁଚାଇଲ କାହିଁ ॥
ଯେତେ ପୁଣ୍ୟଫଳ ନେତ୍ରେ ଦର୍ଶନ ହୋଇଲା ।
ଛଟକ ମାତ୍ରକେ ଚିତ୍ତ ଅଟକ ରହିଲା ॥
ତୁମ୍ଭ ସାଦୃଶ୍ୟରେ ଗୋପ ନଗରେ ନ ଦେଖି ।
କି ଅବା ଅମରାବତୀ ଅଇଲ ଉପେକ୍ଷି ॥
କାମଛଳେ ଅବୋଧ ନାୟିକା ଗୁଣ ବହି ।
ଆହେ ମିତ୍ର କେମନ୍ତ ଦେଖିଲ ତୁମ୍ଭେ କହ ॥
ଛଟକ ଭଙ୍ଗିମା ଠାଣି ପୁଲକଇ ଦେହ ।
କିମ୍ଭୂତ ମାତ୍ରକେ ଏତେ ଲଗାଇଲ ମୋହ ॥
ଯେବଣ ବିମ୍ବୋଷ୍ଠି ମିତ ଥିଲା ଏହିଠାଇଁ ।
ଆଗୋ ସଖୀ ଚାହାନ୍ତି ବଦନ ନେଉଟାଇ ॥
ଚରମ ଦେଶରେ ଚନ୍ଦ୍ର ଉଦେ ଶୋଭା ଦିଶି ।
ଦେଖୁଁ ଦେଖୁଁ ଲତା ଭିତରେ ଚାଲିଲା ପଶି ॥
ଲତାଜାଳ ନୁଆଁଇଣ ଫୁଲ ତୋଳୁଥିଲା ।
ଆମ୍ଭଙ୍କୁ ଦେଖିଣ ବାଳୀ ଗୁଡ଼ି ପଳାଇଲା ॥

ଦେଖ ଲତା ଉପରକୁ ଧାଉଅଛି ନେକ ।
ମୋର ଜୀବ ଯେହ୍ନେ ଏହୁ ଗଗନେ ଯିବ କି ॥
ଉଚ୍ଚଶିଖେ କର ଯେ ବଢ଼ାଉ ଶୁଭ୍ରକେଶୀ ।
ଦେଖ ଅବନୀରେ ପାଦ ଅଗ୍ର ଅଛି ବସି ॥
ତୋଳନ୍ତେ କୁସୁମ କରୁଁ ଉଚ୍ଛୁଳ ଛୁଡ଼ୁଛି ।
ଉର୍ଣ୍ଣନାଭ ଜାଲ ଯିବା ଛଟକେ ପଡ଼ୁଛି ॥
ଚନ୍ଦନ କୁଙ୍କୁମ ମୃଗମଦ କୁଚ ସଙ୍ଗେ ।
ଲତା ପଲ୍ଲବରେ ଲାଗି ଅଛଇ ସଂଯୋଗେ ॥
ଏ ମୋର ହୃଦୟେ ଆଣି ଲଦସି ହେ ମିତ ।
ଅନଙ୍ଗଅନଳ ଲଭୁ ସ୍ଥିର ହେଉ ଚିତ୍ତ ॥
କଣ୍ଟକ ଯା ପଟେ ଲାଗି ପାଲଟି ରହିଲା ।
ତରତରେ ଛଡ଼ାଇଣ ଅଳପେ ଚାହିଁଲା ॥
ନୟନ ବିଷମ ବାଣ ମରମେ ବାଜିଲା ।
ନୋହିଲେ ଧରନ୍ତି ଯାଇଁ ଚେତନା ହଜିଲା ॥
ଫଳଫୁଲ ତୋଳିବାରେ ଭୁଜ ତୋଳି ବାମା ।
ଦିଶୁଥିଲା ବନ୍ଧତରେ କୁଚଶମ୍ଭୁସୀମା ॥
କି କହିବ ବଚନରେ ବର୍ଣ୍ଣିବ କେତେ ।
ଦର୍ଶନେ ନିଳପେ ସିନା ରହିଲି ସ୍ତମ୍ଭିତେ ॥
ବଟୁ ବୋଲେ ଅଟୁ ଯେଣୁ ନବୀନ ମଦନ ।
ଦେଖି କୁଚଶମ୍ଭୁ ଉପୁ ବାସ ଆଚ୍ଛାଦନ ॥
ଗଉରୀ ସହିତେ ବନେ ଜରେଣ ପଶିଲେ ।
ମାର ନରପତି କର ପୀଡ଼ାକୁ ହାସିଲେ ॥
କୁଆଁରୀ ସ୍ୱବଶ ସେହୁ ଜାଣିଲାଇଁ ତାଙ୍କୁ ।
ଦେଖି ଦେଖି ଲୋଭିଲେ ତୋ ପର ପୁରୁଷଙ୍କୁ ॥
ସୁବଳ ବୋଲନ୍ତି ସେହୁ ନୁହନ୍ତି ସ୍ୱକୀୟା ।
ଦ୍ରବ୍ୟ ସଞ୍ଜିନୀ ସେହୁ ପରସେବକୀୟା ॥
ନିଜ ଆତ୍ମସୁଖ ନାହିଁ ପରସୁଖେ ସୁଖୀ ।
ଗନ୍ଧ ପୁଷ୍ପ ଅଶନ ତାମ୍ବୁଲ ସଜ୍ଜ ରଖି ॥
କୃଷ୍ଣ ବୋଲେ ନାଗରୀ ନାରୀଙ୍କ ଯେହ୍ନେ ରୀତ ।
ଦେଖା ଦେଇ ଅନୁରାଗ ବଢ଼ାଇ ରହନ୍ତି ॥
ଉତ୍ତମ ସ୍ତ୍ରୀ ଲକ୍ଷଣ ଏ ଦ୍ରବ୍ୟ ସଞ୍ଜୟୁତ ।
ନିଜକାନ୍ତ ମନସ୍ତାପ କରନ୍ତି ମୋଚନ ॥
କଥା କହୁଁ କହୁଁ ଦୃଷ୍ଟି ଧନୁର୍ଦ୍ଧାରେ ପଡ଼େ ।
ରାହାଳ ଦେଖିଲା ବନ ପଶି ତହିଁ ଲୋଡ଼େ ॥

ପ୍ରାଣପ୍ରିୟେ ମୋର ଏତେ ନିଷ୍ଠୁର ହୋଇଲ ।
ଦରିଦ୍ରରେ ଧନ ଦେଖାଇଣ ତ ହରିଲ ॥
କେଣେ ଲୁଚିଅଛ ଚନ୍ଦ୍ରବଦନ ଦେଖାଅ ।
ଚକୋର ଲୋଚନେ ସୁଖ ଅମୃତ ଚଖାଅ ॥
ଅନ୍ତରେ ରହିଣ ବାଳୀ ପିଣ୍ଡା ନ ଚଳଇ ।
ମରମ ବଚନ ଶୁଣି ତନୁ ତରଳଇ ॥
କେତେଦୂରେ ପୁଣି ଯେ ହସିଲେ କନ୍ୟାଗଣ ।
ଛପିଛପି ଲତା ଜହାଡ଼ରେ ତିନିଜଣ ॥
ସନ୍ନିଧେ ପ୍ରବେଶ ହୋଇ କହନ୍ତି ବିନୟେ ।
ବନେଶ୍ୱରୀ ହୋଇ ବନବାସୀରେ ନିର୍ଦ୍ଦୟେ ॥
ନିର୍ମଳ ଜଳ ସନ୍ନିଧି ତୃଷାର୍ତ୍ତ ଅଇଲେ ।
ତୃଷା ଶାନ୍ତ ନ କରିଲ କି ଅନ୍ୟାୟ ହୋଇଲେ ॥
କୃଷ୍ଣର ବଚନ ଶୁଣି ବୃନ୍ଦାଦେବୀ ଭାଷେ ।
ଯେବଣ ଚାତକ ତୃଷା ହରେ ଘନରସେ ॥
ସେ ପୁଣ ଅବନୀ ନୀରେ ଆଦର ନ ବହେ ।
ମର୍କତନାୟକ ହେମ ପିତ୍ତଳେ କି ଶୋହେ ॥
ଶୁଣି କୃଷ୍ଣ ସୁବଳର ମୁଖକୁ ଚାହିଁଲେ ।
ମନ୍ଦ ମନ୍ଦ ହସି ପ୍ରଚ୍ଛବଚନ କହିଲେ ॥
ମଧୁକର ସର୍ବବିଧ କୁସୁମ ଚୁମ୍ବଇ ।
ଭଲ ମନ୍ଦ ମକରନ୍ଦରସରେ ରସଇ ॥
ଭେଦ ନ କଲକୁ ଯେହ୍ନୁ ସର୍ବ ପୁଷ୍ପବନ୍ଧୁ ।
ଯୁବତୀରତ୍ନକୁ କେ ପୁରୁଷ ଲଙ୍ଘେ ନିନ୍ଦୁ ॥
ଢୁଳଢୁଳ ଦୃଷ୍ଟିଭ୍ରୂ ଆଣିଲା କଡ଼ାଇ ।
ନୟନେ ଦର୍ଶନେ ମନେ ଉଲ୍ଲାସ ବଢ଼ାଇ ॥
ମୁଖପଦ୍ମ ସୁଗନ୍ଧ ଆଘ୍ରାଣେ ଆଶା ବଢ଼େ ।
ଅଙ୍ଗେ ଅଙ୍ଗ ମିଶି ବିମ୍ବାଧର ପାନ ଲୋଡ଼େ ॥
ଚଞ୍ଚଳତେ ସୁହୃଦକୁ କାହିଁ ସୁନ୍ଦରୀ ।
ଦୟବିଧେ ଦେଖିଲ ସେବକ ହୋଇଲ କି ବଇରି ॥
ସନ୍ଦେହ ଯେ ବୁଦ୍ଧ ସଖି କହିବାକୁ ହୋଉ ।
ସୁଫଳ ହୋଇବ ଅଙ୍ଗ ବିଫଳ ଯେ ନୋହୁ ॥
ମୁନିମନମୋହିନୀ ଅପୂର୍ବ କନ୍ୟାଗଣ ।
ଭାଗ୍ୟବଳେ ମିଳିଲୁ ଯେ ତୁମ୍ଭ ସଙ୍ଗତେଣ ॥
ବହୁକାଳ ଅନୁସରି ପାଇଲ ଦର୍ଶନ ।
ସଦୟ ହୃଦୟେ ସଖି ହୋଇବା ପ୍ରସନ୍ନ ॥

କୃଷ୍ଣର ବିନୟ ବାଣୀ ଶୁଣି ବୃନ୍ଦାବତୀ ।
କୃତାଞ୍ଜଳି ହୋଇ ପୁଣ କାକୁସ୍ତେ କହନ୍ତି ॥
ବ୍ରଜେନ୍ଦ୍ରନନ୍ଦନ ତୁମ୍ଭେ ଅଖିଳବନ୍ଦନ ।
ଦାସୀ ସଙ୍ଗ ଇଚ୍ଛା କର କିସ ପ୍ରୟୋଜନ ॥
ଠାକୁରାଣୀ ଅଙ୍ଗ ସଙ୍ଗ ଯେଉଁ ଅଙ୍ଗ ଯୋଗ୍ୟ ।
ହୁଅଇ କି ବେଳେ ତାହା ପରଶୁଙ୍ଗ ଭୋଗ୍ୟ ॥
ବୋଲନ୍ତି ନାଗରରୂପେ ତ୍ରିଭୁବନ ମୋହୁ ।
ତୁମ୍ଭର ଉପରେ ଠାକୁରାଣୀ ଅଛି କେହୁ ॥
ଏମନ୍ତ ଯେ ଶୁଣି ବୃନ୍ଦା ସ୍ୱରୂପ ପ୍ରକାଶି ।
ବୃଷଭାନୁ ଜେମାଦେଙ୍କ ଦାସୀର ମୁଁ ଦାସୀ ॥
ତାଙ୍କ ପଦ ନଖରରେ କେଉର ନୂଶର ।
ଏଥିରେ କି ହେବ ଲୀଳା ଯଶର ବିସ୍ତାର ॥
ବାହାର ରାଜକୁମର ରାଜଜେମା ସଙ୍ଗେ ।
କଉତୁକେ କେଳିରସ ବଢ଼ ନାନାରଙ୍ଗେ ॥
ରାଧାଠାକୁରାଣୀ ରୂପ ରୂପେ ପଟାନ୍ତର ।
ଜାମ୍ବୁନଦେ ନୀଳମଣି ଯେମନ୍ତ ସୁନ୍ଦର ॥
ଠାକୁରାଣୀ ନାମ ଯହୁଁ ପଡ଼ିଲା ସଭାରେ ।
କର ଯୋଡ଼ି ସଖୀଗଣ ନମସ୍କାର କରେ ॥
କୋଳାହଳେ ଗାନ୍ତି ଜୟ ଜୟ ଶ୍ରୀରାଧିକେ ।
ଜୟ ବୃଷଭାନୁ ଜେମା ଜୟ ଗାନ୍ଧର୍ବିକେ ॥
ଆଶ୍ଚର୍ଯ୍ୟ ପାଇଣ ହରି ବୋଲେ କହ କହ ।
ଦାସୀ ହୋଇ ତୁମ୍ଭେ ଯେ ଜଗତଜନେ ମୋହ ॥
ଠାକୁରାଣୀ ପୁଣ ତୁମ୍ଭ କେଡ଼େ ଶୋଭାବନ ।
କହ ଗୋ ସୁନ୍ଦରୀ ଶୁଣି ଶରଧା ମୋ ମନ ॥
ବୋଲନ୍ତି ଯେ ବୃନ୍ଦା ପୁଣ ଗୋକୁଳନାଗର ।
ସର୍ବଗୁଣ ଆଶ୍ରିତ ସେ ଲାବଣ୍ୟସାଗର ॥
ମହାଭାବ ସ୍ୱରୂପିଣୀ ଗୁଣେ ଗରୀୟସୀ ।
ଶୋଭା ଲେଶ ଉପମା ତ ବ୍ରହ୍ମାଣ୍ଡେ ନ ଦିଶି ॥
ଦୃଷ୍ଟାନ୍ତରେ କିଛି ଅବା କହିବି ବଚନ ।
ଶୁଣି ଯେବା ହୋଇଣ ପାରିବ ସ୍ଥିରମନ ॥
ରମା ଉମା ସାବିତ୍ରୀ ଯେ ଶଚୀ ରତି ଆଦି ।
ଯାର ରୂପ ଶୋଭା ଗୁଣ ନିରତେ ସମ୍ବାଦି ॥
ତାରଶୋଭା କହିବାକୁ କାହିଁ ମୋ ଯୋଗ୍ୟତା ।
ଯେଣୁ ଉପଗତେ ତୁମ୍ଭେ ହୋଇଅଛ ଶ୍ରୋତା ॥

ତେଣୁ କିଛି କହିବାକୁ ହେବ ଭାରଜନ ।
ପବିତ୍ର ହୋଇଲା ସେ ସଫଳ ଆଜ ଦିନ ॥
ତ୍ରୈଲୋକ୍ୟମୋହିନୀ ସର୍ବଗୁଣେ ସୁଲକ୍ଷଣୀ ।
ଶୁଦ୍ଧଜାତି ପଦ୍ମିନୀ ତରୁଣୀ ଶିରୋମଣି ॥
ଧାତା ଯେବେ ଏତେଶୋଭା ଗୋଚର ପାଆନ୍ତା ।
ସୁନ୍ଦରୀ ସଂସାରେ ସେ ରଚନା ନ କରନ୍ତା ॥
ଚୂଳରୁ ଚଞ୍ଚଳ ଶୋଭା ଛଟକ ତାହାର ।
ନୟନ ଜାଣଇ କେତେ ବଚନୁ ବାହାର ॥
ଚିକ୍କଣ ଗଣ୍ଡର କାନ୍ତି କୋମଳତା ଦେଖି ।
ହୃଦଶୂଳେ ଚମ୍ପକ କେତକୀ ଭସ୍ମ ମାଖି ॥
ହରିତାଳଦଳିତ ଅନଳେ ହେମ ଖୋସି ।
ତରଳରେ ଜମ୍ବୁନଦ ଶରଣ ଯେ ପଶି ॥
ଶରଣବତ୍ସଳ ଆଭରଣ ଅଙ୍ଗେ ବହେ ।
କୁଙ୍କୁମାଦି ଯେତେ ସବୁ ଅନୁଗତେ ରହେ ॥
ଶ୍ରୀମୁଖକୁ ଚାହିଁ ସୋମ ସମ ଇଚ୍ଛା କରେ ।
କୁମୁଦ ଆକାରେ ସେ ମୃତ୍ତିକା କୋଳେଧରେ ॥
ମୋତିପୁଞ୍ଜୀ ବସନୀ ପ୍ରାନ୍ତପୂକ ଶୋଭା ଜ୍ୟୋତି ।
ବେନପାଣେ ତାଟଙ୍କ କି ଶୁକ୍ର ବୃହସ୍ପତି ॥
ଚାହିଁ ଚନ୍ଦ୍ରନେତ୍ର ଶଶ ମୃଗ ଅଙ୍ଗେ ଧରେ ।
ମୃଦୁହାସ ପିୟୂଷ ସ୍ୱଭାବେ ବନ୍ଦ କରେ ॥
ଶର୍ବ ବହ୍ନି ଉଦେ ହୋଇ ଗଗନ ମଣ୍ଡଳେ ।
ଦେଖିଣ କୁମୁଦ ସେ ହସଇ ଥାଇ ଜଳେ ॥
ବିଶ୍ୱକର୍ମା ବୋଲେ ଶଶୀ ନୋହିଲୁ ସମାନ ।
ଭ୍ରୂଭଙ୍ଗି ଛଟକ ଓଷ୍ଠ ସୁରଙ୍ଗବର୍ଣ୍ଣନ ॥
ପଦଗନ୍ଧ କୁନ୍ଦରଦ ତୋର ହେବ କାହୁଁ ।
ଦାନବର ଯୋଗ୍ୟ ତେଣୁ ଭୋଗକରେ ରାହୁ ॥
ଦେବତାଏ ମିଳିଣ ଅମୃତ ବାଣ୍ଟି ନେଲେ ।
ରଜନୀଭ୍ରମଣୀ ଦେଖି ଗୁଡ଼ ପଳାଇଲେ ॥
ମଳିଣ ହଶିଣ ଶଶୀ ଦିନୁଦିନ କ୍ଷୀଣ ।
ଠାକୁରାଣୀ ଚରଣରେ ପଶିଲା ଶରଣ ॥
ଏକ ଏକ କଳା ମିଶି ନଖରଣେ ରହେ ।
ଅନୁକ୍ରମେ ପଞ୍ଚଦଶ କଳା ସେବ ଶୋହେ ॥
ମହତ୍ତ୍ୱ ସ୍ମରଣେ ଶଶୀ ଦେବଙ୍କୁ ଦୁର୍ଲ୍ଲଭ ।
ଶେଷକଳା ଶିରରେ ବହିଲେ ମହାଦେବ ॥

ମୃଗାଙ୍କର ଧରଣ ସେ ଚାଣ୍ଡବେ ପ୍ରମୋଦେ ।
ବ୍ରହ୍ମା ଦେଖି ଲୋଭିତ ସେ **ଚରଣ** ପ୍ରସାଦେ ॥
ଶୁକ୍ଳାଂଶୁ ଯେମନ୍ତ ରବିହୀନ ଶତାକାନ୍ତି ।
ଶୀତଗୁଣ ପବନ ଭୁବନେ ନେଲେ ବାଣ୍ଟି ॥
କନ୍ୟପିଣ୍ଡ ତପନ ସେ ଅଙ୍ଗେ ଆଲିଙ୍ଗନ ।
ବଧୂନାମ ଅଙ୍ଗୀକାର କଲେ ଭଗବାନ ॥
କୃଷ୍ଣପକ୍ଷ ପଞ୍ଚଦଶ ତିଥି ଯେ ହୋଇଲେ ।
ଦେବଗୁରୁ ଜଉତିଷ ପାଞ୍ଜିରେ ଲିହିଲେ ॥
କଳକଣ୍ଠ ମଜନ ବ୍ରତରେ ତପେ ଥିଲା ।
ଏହି ପୁଣ୍ୟଦିନ ତିଥି ନାମେ ଡାକ ଦେଲା ॥
ଶ୍ରୀଶ୍ରୀ ପ୍ରମୋଦିତ ମନ୍ଦ ମଳୟ ପବନେ ।
ମଦନବର୍ଦ୍ଧନ ନବପଲ୍ଲବ କାନନେ ॥
ସର୍ବ ନେତ୍ର ଶଶୀ ଯହୁଁ ଚରଣେ ରହିଲା ।
ତେଣୁ ଠାକୁରାଣୀ ମନେ ସୁଦୟା ହୋଇଲା ॥
ପାଦପଦ୍ମ ମକରନ୍ଦ ଆହ୍ଲାଦ ପାଇ ।
ଦ୍ୱିତୀୟକଳା ନବଚନ୍ଦ୍ର ନଭେ ଉଭା ହୋଇ ॥
ଦିନୁଦିନ ବୃଦ୍ଧି ଜନେ ଶରଧା ବଢ଼ାଇ ।
ଦେଖି ବହ୍ନି ରକ୍ଷାର୍ଥେ ମଣ୍ଡଳ ବେଢ଼ାଇ ॥
ଦ୍ୱିଜରାଜ ପଦେ ଅଭିଷେକ କରାଇଲେ ।
ଗଙ୍ଗାଧର ମଉଡ଼େ ଛତ୍ର ଧରାଇଲେ ॥
ତୁଷାର ସେ ବିନ୍ଦୁ ପଡ଼େ ଅଭିଷେକ ଜଳେ ।
ନାନା ରତ୍ନବୃଷ୍ଟି ତାରା ଗଗନ ମଣ୍ଡଳେ ॥
ରଜନୀରମଣୀ କୋଳେ ପାଉଅଛି ଶୋଭା ।
କିରଣ ଅମୃତେ ଦଶଦିଶେ ପୂରେ ପ୍ରଭା ॥
ବନ୍ଦାପନାବେଳେ ତାର କନ୍ୟା ମୋହ ହୋଇ ।
ଝିଅ ଦେଇ ପ୍ରଜାପତି ଶ୍ୱଶୁର ବୋଲାଇ ॥
ରତିପତି ପ୍ରୀତି ଇଚ୍ଛି ମିତ୍ର ଯେ ହୋଇଲା ।
ଠାକୁରାଣୀ ଆଗ୍ରେ ଏତେ ସମ୍ପଦ ପାଇଲା ॥
ବୃନ୍ଦା ତହୁଁ ଶ୍ରୀ କୃଷ୍ଣ ଜରଜର କାୟେ ।
ଲୋଚନ ଅଧରସୁଧା ସ୍ୱେଦ ମିଶି ବହେ ॥
ଶ୍ୟାମକୁଣ୍ଡ ଠେଲି ହୋଇ ପ୍ରବାହ ଆଗମେ ।
ମଧ୍ୟ ନଳା ଫିଟି ରାଧାକୁଣ୍ଡର ସଙ୍ଗମେ ॥
କମ୍ପମାନ ପୁଲକ ବିବର୍ଣ୍ଣ ହରି ଦେଖି ।
ସାତ୍ତ୍ୱିକ ବାଧିଲା ଚାହିଁ ବୃନ୍ଦା ଉପଲକ୍ଷି ॥

ବସ୍ତ୍ରେ କହିବ ଯେବେ ସର୍ବାଙ୍ଗ ବର୍ଣ୍ଣନା ।
ଦ୍ରବି ସର୍ବ ଅଙ୍ଗ ଜଳ ହୋଇଯିବ ସିନା ॥
ଏତେ ବସ୍ତ୍ରହରଣ ପଚ୍ଚରଇ ପାସୋରଇ ।
କି କାରଣେ ରୋମ ପୁଲକିତ ଲୁହ ବହି ॥
ବୋଲେ ହରି ଶୁଣ ସୁନ୍ଦରୀ କହିଲୁଟି ଯାହା ।
ଶ୍ରବଣେ ଶୁଣି ନୟନେ ଉଦ୍‌ଗାରିଲ ତାହା ॥
ଶରୀର ମଧ୍ୟରେ ସାର ବୋଲଉ ଯେ ତୁହି ।
ଅପୂର୍ବ ସୁନ୍ଦରୀ ଶୋଭା ଶୁଣୁଅଛୁ ମୁହିଁ ॥
ହୃଦୟେଣ ସମ୍ଭାଇଣ ପୁଲକଇ ଅଙ୍ଗ ।
ତୁହି ବାରେ ଦେଖିବାକୁ ନୋହିଲୁ ଯା ଯୋଗ ॥
ଏହି ଅପମାନେ ନେତ୍ର ଲୋତକ ତେଜଇ ।
କହ ଏବେ କେମନ୍ତ ଏ ଶାନ୍ତିକ ଭଜଇ ॥
ହରି ବୃନ୍ଦା କଥା ହେଉ ବଟୁ ଭଦ୍ରା ସଙ୍ଗେ ।
କଉତୁକେ ସମାସ୍ୟା ଯେ ପଚୁରନ୍ତି ରଙ୍ଗେ ॥
ଛୁଇଁ ଗୃହିଁ ପରଶରେ ଶୁଣି କେ ଦ୍ରବଇ ।
ଚନ୍ଦ୍ର ଗୃହିଁ ଚନ୍ଦ୍ରକାନ୍ତମଣି ଯେ ସ୍ରବଇ ॥
ଅନଳ ପରଶ ଲାଗି ତରଳଇ ଘୃତ ।
କୃଷ୍ଣ ବଂଶୀସ୍ୱନ ଶୁଣି ପାଷାଣ ତେମନ୍ତ ॥
ତହୁଁ ଏ ଅଧିକ ବଟୁ ବୋଲେ ଇଙ୍ଗିତରେ ।
ସୁବଳକୁ ହସି କହେ କରତାଳି ମାରେ ॥
ବଟୁ କଟୁ ବଚନରେ ଛଳ ସଖୀ ବୋଲେ ।
ଅନେକ କାଳରୁ ଶୀଳା ଜଳେ ବୁଡ଼ିଥିଲେ ॥
କେବେହେଁ ଯେ ଅନ୍ତଃତାର ଜଳରେ ନ ବୁଡ଼େ ।
ଯୁବତୀରତନ ହିଆ କାମାନଳେ ପୋଡ଼େ ॥
ଶ୍ୟାମଘନ ଲାବଣ୍ୟ ସଲିଳ ସଙ୍ଗ ମାନେ ।
ଏକହୋଇ ନିମଜ୍ଜିଣ ଯିବେ ଗାଢେ ଗାଢେ ॥
ଶ୍ରୀପ୍ସା ବୋଲେ ଆମ୍ଭେ ପୟଃଫେଣୀର ଲକ୍ଷଣ ।
ତୁମ୍ଭେ ବଡ଼ ପକ୍ୱଫଳ ରସାଳର ଗୁଚ୍ଛ ॥
ବୋଲଇ ଲୋଲିତା ମୋହ ତହୁଁ ଶୁଣ ବଟୁ ।
ଜିହ୍ୱା ସେ ଜାଣଇ ସ୍ୱାଦୁ ନ ଜାଣଇ ଚଟୁ ॥
କ୍ଷୀରର ସଙ୍ଗତେ ନୀର ଅଭେଦ ମିଶଇ ।
ଘୃତ ମିଶିଲେଣି ଭାସି ଅଲଗ ଦିଶଇ ॥
ସଖୀ ସେ ଜାଣନ୍ତି ରସ ମଧୁର ଗୃତୁସି ।
ତୁମ୍ଭେ ସଖା ଜାଣ ବନେ ରଖିବା ବାଛୁସି ॥

ବୋଲଇ ସୁବଳ ସବୁ ଜାଣିବା ଏଠାଇଁ ।
ବୃଷଭାନୁକୁମାରୀଙ୍କ ପାରିଲେ ଭେଟାଇଁ ॥
ବୃନ୍ଦା ବୋଲେ ଶୁଣି ବଟୁ ଗଲେଣି ତରଳି ।
ଦେଖିଲେ ଧଇର୍ଯ୍ୟ କେହ୍ନେ ପାରିବେ ସମ୍ଭାଳି ॥
ମୁଖଚନ୍ଦ୍ରମଣ୍ଡଳ ହିମାଦ୍ରି କୁଚ ଭେଦ ।
ଲାବଣ୍ୟ ନିର୍ମଳଜଳ ବହେ ରୂପନଦୀ ॥
ପଞ୍ଚଶର ବରଷାରେ ବଢ଼ି ଲଙ୍ଘେ କୂଳ ।
ନେତ୍ରାପାଙ୍ଗ ତରଙ୍ଗରେ ଭ୍ରୂକୁଟୀ କୁଟିଳ ॥
ମନ୍ଦହାସ ସ୍ରୋତ ଅତି ବଚନ ଗମ୍ଭୀର ।
ତ୍ରିବଳୀ ଘୂର୍ଣ୍ଣନାଭି ଭଉଁରୀ ଠୋପର ॥
ପଡ଼ି ବୁଡ଼ି ଗଡ଼ି ଅସମ୍ଭାଳେଣି ଭାସିବ ।
ଅଣକତ କାୟେ କାମ କୁମ୍ଭୀର ଗ୍ରାସିବ ॥
ବିବେକ ଯେ କୂଳ ତରୁ ହୋଇବ ଭଞ୍ଜନ ।
ଆସି ନ ପାରିବେ ତହିଁ ହୋଇବେ ମଗନ ॥
ଉଦ୍ଧାରିବା ପାଇଁ ଆମ୍ଭେ ସର୍ବେ ଯୋଗ୍ୟ ନୋହୁଁ
ଯେତେବେଳେ ତୁମ୍ଭେ ଦୋଷ ନ ଦେବଟି ଆଉ ।
ଶୁଣି କୃଷ୍ଣ ମୋଦେ ଗଦଗଦେଣ ବଚନ ।
ବୋଲେ ମୋ ନୟନ-ମୀନ ସେ ସୁଖ ସଦନ ॥
ହରଷ ମାନସ ହଂସ କ୍ରୀଡ଼ାରେ ସତତ ।
କୁଚ-ତୁମ୍ବୀ ଅବଲମ୍ବେ ସୁମତି ତରତ ॥
ଏତେ କହି ବୃନ୍ଦାର ଯେ ହସ୍ତକୁ ଧରିଲେ ।
କୃତ କୃତ ହୋଇ ହରି ଶିରେ ଲଗାଇଲେ ॥
ବୋଲନ୍ତି ଜଗିଣ ଥିବ ଏହି କୁଣ୍ଡ କୂଳେ ।
ଦର୍ଶନ ପାଇବ କାଲି ସୂର୍ଯ୍ୟପୂଜା ବେଳେ ॥
ଏହିଠାରୁ ସଖା ହେନ ଆଗକୁ ନ ଯିବ ।
ଜଟିଳା ଜାଣିଲେ ଖେଦସାଗରେ ମଜ୍ଜିବ ॥
ଏତେ କହି ବୃନ୍ଦାଦେବୀ ଯେଝାସ୍ଥାନେ ଗଲେ ।
କୁଣ୍ଡ ଦେଖି କୃଷ୍ଣ ମନେ ଆନନ୍ଦିତ ହେଲେ ॥
ନିର୍ମଳ ଶୀତଳ ଜଳ ସ୍ୱାଦୁ ସୁପବିତ୍ର ।
ନିଜ ନାମ କୁଣ୍ଡେ ହରି ହୋଇଲେକ ମିତ୍ର ॥
ମଧ୍ୟେ ନଳା ଫିଟି ରାଧା କୁଣ୍ଡରେ ମିଶଇ ।
ଦେଖି ହସି କୃଷ୍ଣେ ମଧୁମଙ୍ଗଳ ଭାଷଇ ॥
କୁଣ୍ଡ ରୂପେ ବେନି ଅଙ୍ଗ ହୋଇଛି ସଙ୍ଗମ ।
ଆମ୍ଭମାନଙ୍କର ଏ ତ ଅଟଇ ଅଗମ୍ୟ ॥

ଦେଖ ହେ ସୁବଳ ନଳା ମଧ୍ୟେ ନୀଳଜଳ ।
ବରକନ୍ୟା କର-ବନ୍ଧନ କି ଗଣ୍ଠି ଆଳ ॥
ଶତପତ୍ର-ମୁକୁଟ ଯେ ଜଳ ମାଳ ନାଳେ ।
ଅସରଳା ମୁକ୍ତା ଯେ ବରଣ ପୁଷ୍ପ ମାଳେ ॥
କମଳ କୋରକେ ଭୃଙ୍ଗ ଶଙ୍ଖଧ୍ୱନି କରେ ।
ବରହରେ ସୁମଙ୍ଗଳ ବାଦ୍ୟ ଧ୍ୱନି ସ୍ଫୁରେ ॥
କୂଳ ତରୁ ଲତା ମୋଦେ କୁସୁମ ବର୍ଷନ୍ତି ।
ଦେଖ ମଧୁ ଧାରା ମଧୁ ହରଷେ ମୁଚନ୍ତି ॥
କାମାନଳେ ହୋମଘୃତ ଅବନୀ ଭରିଲେ ।
ଶୁକ ଆଦି ଦ୍ୱିଜ ବେଦବଚନ ପଢ଼ିଲେ ॥
ନବଦଳ ବକୁଳ ଭ୍ରମର ଖଦିରଶ୍ରେଣୀ ।
ଅର୍ଘ୍ୟଦାନ ହରଷେ ପଦ୍ମିନୀ ସୁଲକ୍ଷଣୀ ॥
ରଜ ସାର୍ଦ୍ଧ୍ୟ ଅକ୍ଷତ ତଣ୍ଡୁଳ ପତ୍ରାବଳୀ ।
କେଶରନିକର ଅଳି ଧ୍ୱନି ହୁଳହୁଳି ॥
ଆଳତି ବନ୍ଦାଇ ଧୀର ପବନ ଗତିରେ ।
ଜଳେ ଜଳବିନ୍ଦୁ ଖଇ ମୋତି ସଦୃଶରେ ॥
ଦ୍ୱୀପଦଣ୍ଡି ମୃଣାଳ ଏ ମଣ୍ଡପ ଯେ ମନ ।
କୁନ୍ଦବେଣ୍ଟ ପଲ୍ଲବ ଏ ବସନ ଅଶନ ॥
କଇଁକଡ଼ି ମୋତିଘଡ଼ି ଅଛଇ ବିଧାନ ।
ସଙ୍କୁଚିତେ କନ୍ୟାସଖୀ କୁମୁଦିନୀଗଣ ॥
ମଚ୍ଛ କଚ୍ଛପାଦି ବରଜାତିଏ ଅଛନ୍ତି ।
ମୁଖ ଦେଖାଇଣ ପୁଣ ପଛକୁ ଯାଆନ୍ତି ॥
ଗନ୍ଧପୁଷ୍ପ ଆମୋଦିତ ହୋଇଛନ୍ତି ଧନୀ ।
ହଂସକୁଳ ଆତଯାତ ପଦ୍ମନାଡ଼ି ଘେନି ॥
ସମ୍ମୁଖା ସମ୍ମୁଖି ହୋଇ ବିଭାକୁ ବଢ଼ାଇ ।
ଜଳଜନ୍ତୁ ଯୁଆଖେଳା କଉଡ଼ି ପକାଇ ॥
ବେନି ଅଙ୍ଗ ତରଙ୍ଗ ଚଞ୍ଚଳ ଉତ୍ସାହରେ ।
ପଦ୍ମିନୀ କୋଳରେ ମଧୁଶଯ୍ୟା ମଧୁକରେ ॥
କୁଣ୍ଡରୂପେ ରାଧା ମାଧବର ବିଭା ଦେଖି ।
ମଧୁମଙ୍ଗଳ ସୁବଳ କହେ ଉପଲକ୍ଷି ॥
ଆମ୍ଭଙ୍କୁ ତ ଭୋଜ କୃଷ୍ଣ ଦେବାର ଉଚିତ ।
ଶୁଣି ହରି ତନୁ ଭାବେ ହୁଏ ପୁଲକିତ ॥
ପରିମଳ କୂଳ ଦେଖି ଠାବେ ଠାବେ ବୁଲି ।
ନିଜକୁଣ୍ଡ କୂଳେ ମଣି ଜ୍ୟୋତି ଦିଶେ ଝଳି ॥

କୁସୁମ ଗଭାରପରେ ଅଛି ଥୁଆ ହୋଇ ।
ଦେଖି ହରି ଘେନି ବେନି ସଖାଙ୍କୁ ଚାହାଇ ॥
ବୋଲେ ବନ୍ଧୁ ବିଭା ଯଉତୁକ ତୁମ୍ଭ ପୁଣି ।
ସୁବଳ ବୋଲଇ ଏହୁ କନ୍ୟା ଚୂଡ଼ାମଣି ॥
ବିଦୂଷ ବୋଲଇ ଏହୁ କନ୍ୟାର ଏ ଦୁତି ।
ଆସିଣ ତୁମ୍ଭରେ ଆଗେ ଲଗାଉଛି ପ୍ରୀତି ॥
ଅମୂଲ୍ୟ ଏ ଚିନ୍ତାମଣି ଲଭିଲ ଦୁର୍ଲ୍ଲଭେ ।
ସୁବର୍ଣ୍ଣରେ ଖଚିତ ହୋଇବ ସୁଲଭେ ॥
ପୁଣ ପୁଣ ହରି ମଣି ପ୍ରଶଂସେ ମୋଦରେ ।
ସୁବର୍ଣ୍ଣ ଆଧାରେ ଗ୍ରନ୍ଥି ଲମ୍ବାଇ ହୃଦରେ ॥
ଏମନ୍ତେ ରବି ମେରୁ ଉହାଡ଼କୁ ଗଲେ ।
ବତ୍ସ ବାଳ ଘେନି ଗୋପେ ପ୍ରବେଶ ହୋଇଲେ ॥
ଜନନୀ ପାଳନ୍ତି ପୁତ୍ର ଅତି ସ୍ନେହ ବହି ।
ଆଜ ତ ଉଛୁର ବାପ କଲ କାହିଁପାଇଁ ॥
ବୋଲନ୍ତି ଶ୍ରୀକୃଷ୍ଣ ଅମା ବତ୍ସ ଥିଲେ ହଜି ।
ବିଳମ୍ବ ହୋଇଲା ତେଣୁ ଆଣନ୍ତେଣ ଖୋଜି ॥
ବଳରାମ ମୋର ସଙ୍ଗେ ଅଭେଟ ହୋଇଲେ ।
ବଛା ଲେଉଡ଼ି ଆଣନ୍ତେଣ ବହୁତ ବୋଇଲେ ॥
ସେହୁ ନ ରଖନ୍ତୁ ବଛା ରଖିବି ମୁଁ ଏକେ ।
ଶୁଣି ଯଶୋଦା ଲୁହ ପଡ଼େ ଥକେ ଥକେ ॥
ଛଟୀ ହଉଥାଇ ଭଲେ ଯାହା ଅଛି ଲଭି ।
ଭୁଞ୍ଜିବୁ ତା ପିନା ମୋର ବୋଲେ କଷ୍ଟ ହୋଇ ॥
ରାମ ରାଜା ହୋଇ ଗୋପେ ସମ୍ପଦ ଭୁଞ୍ଜିବ ।
ତୋର କର୍ମେ ଅଛି ଦେହ ଦୁଃଖେ ଗଞ୍ଜି ହେବ ॥
ଏତେବୋଲି ଯଶୋଦା ଗୃହ ଚରଣ୍ଡରେ ।
ସଖା ମେଳେ ଯାଇ ପୁଣ ଗୋଦୋହନ କରେ ॥
ପୂର୍ବବାନ ସଭା କଲେ ନୃତ୍ୟଗୀତ ରଙ୍ଗେ ।
ବିବିଧ ଭୋଜନ କଲେ ସୁବଳର ସଙ୍ଗେ ॥
ନେତ ତୁଳି ଗଜଦନ୍ତ ପଲଙ୍କେ ପହୁଡ଼ି ।
ରାଧା ବାଧାରେ ନିଦ୍ରା ନୟନେ ନ ମାଡ଼ି ॥
ମଧୁମଙ୍ଗଳର ସଙ୍ଗେ ବିଚାରି ଏକାନ୍ତେ ।
ରାଧା ସନ୍ନିଧିକି ଭେଦ କରିବା କେମନ୍ତେ ॥
ବେଭାରେ ନୃପତିଜେମା ସୂର୍ଯ୍ୟପୂଜା କରେ ।
ଆମ୍ଭଙ୍କୁ ଦେଖିଣ ପୁଣ ବଡ଼ଗୁଣ୍ୟ ଧରେ ॥

ଦେଖାଦେଖି ପରଶତ ଆଗରୁ ନୋହିଲୁ ।
ଦେଖିଲେ ଅନ୍ତର ହୁଏ ନ ପୁଣ ମୃଗାକ୍ଷୀ ॥
ବହୁ ଆକଟନ୍ତି ଶାଶୁ ନଣନ୍ଦ ତାହାର ।
ଜାଣିଲେ ସେ ନ କରିବେ ମନ୍ଦିରୁ ବାହାର ॥
ଏଥିକୁ ଉପାୟ ଆଗେ କରିବା ବିଧାନେ ।
ବୃନ୍ଦା ବୋଲେ ହରି ତୁମ୍ଭ ଶୁଣ ସାବଧାନେ ॥
ଚତୁରା ନାପିଆଏ ଅଛି ଦୂତି ତାର ନାମ ।
ତାହାକୁ ପେଷିଣ ଯେ ଜାଣିବା ସବୁ ମର୍ମ ॥
ବୋଲେ ହରି ଚାଲ ଯିବା ତାହାର ସଦନେ ।
ଏତେବୋଲି ବାହାର ହୋଇଲେ ବେନିଜନେ ॥
ଦୂତିକା ମନ୍ଦିରେ ଯାଇ ହୋଇଲେ ପ୍ରବେଶ ।
ଦୀପ ଜାଳି ବସି ବାଳୀ ମନରେ ହରଷ ॥
ରାଧା ଅନୁରାଗ ବାସ ଅଳଙ୍କାର ପାଇ ।
କୃଷ୍ଣଙ୍କୁ କେମନ୍ତେ ଏକା କରି ଦେଖିବଇଁ ॥
ରାଧା ଶ୍ରଦ୍ଧା କାମବାଧା ବେଦନା କହିବ ।
କେମନ୍ତେ ମୋ ଇଷ୍ଟଦେବ ସଫଳ ନୋହିବ ॥
ଏମନ୍ତେ ଏ ଦୁଇ ମିତ ଦେଖିଣ ପୁରତେ ।
ଶୁଭ ଯୋଗ ସଙ୍କୁନ୍ୟରେ ଭେଟିଲ ତୁରିତେ ॥
ଚରଣ ପଖାଳି ଦୂତି ଆସନେ ବସାଇ ।
କେତେ ବିନେ କଲା ଧୀରେ ବଚନ ଭାଷଇ ॥
ବୋଲଇ ବିଦୂଷ ଶୁଣ ଚତୁରା ସିହାଣି ।
ଏ ନନ୍ଦନନ୍ଦନ ରାଧା ରୂପ ଗୁଣ ଶୁଣି ॥
ବିରହକାତର ହୋଇ ଚିତ୍ତ ଅଟକାଇ ।
ମନୋଭବ ସମ୍ଭାରେଣ କଲି କଟକାଇ ॥
ସାହା ହୋଇ ଚନ୍ଦ୍ରବଦନୀକି ଭେଟାଇବ ।
ମହାଘୋର ମଦନ ଅନ୍ଧାର ତୁଟାଇବ ॥
ଶୁଣି ଦୂତି ସ୍ୱରୂପ କହଇ ଏଅନ୍ତରେ ।
ତୁମ୍ଭ ପାଇଁ ବିରହିଣୀ ରାଧା ସନ୍ତତରେ ॥
ମନାନ୍ତେ କରି ଲଜ୍ଜା ଅଙ୍କୁଶ ନ ମାନି ।
ଗୁରୁଜନେ ବଞ୍ଚାଇଣ ଲୁଚିଛି ସଜନୀ ॥
ଗୋବତ୍ସା ଚରାଉ କଯାଉଁ ମୁରଳୀ ବଜାଅ ।
ନ ଦେଖି ସଦନେ ଥିଲେ ମନକୁ ମଜାଅ ॥
ତୁମ୍ଭ ପାଦପଦ୍ମ ଚିନ୍ତି ଚିତ୍ତ ଆରାଧନେ ।
ସୂର୍ଯ୍ୟ ଛଳେ ପଦ୍ମରୂପ ପୂଜଇ ବିଧାନେ ॥
ତୁମ୍ଭ ଗୋଚାରଣ ଲୀଳା ଗବାକ୍ଷପଟେ ଦେଖି ।
ସୁଖୀ ହୁଏ ନଟବର ବେଶ ଛବି ଦେଖି ॥
ସେହିରୂପ ନୟନରେ ଦେଖଇ ସ୍ୱପନ ।
ବୃନ୍ଦା ତହୁଁ ଶୁଣି ପୁଣ ପ୍ରସନ୍ନ ଲପନ ॥
ବେଳୁବେଳ ଅନୁରାଗ ଅନ୍ତରେ ବଢ଼ଇ ।
ମୋହ ଯାଇ କ୍ଷଣେ କ୍ଷଣେ ଢଳିଣ ପଡ଼ଇ ॥
ତୁମ୍ଭର ସଙ୍ଗତେ ଭେଟ କରାଇବା ପାଇଁ ।
ଅଳଙ୍କାର ବସନ ଅଛଇ ଦେଖ ଦେଇ ॥
ଆସିଣ ତୁମ୍ଭଙ୍କୁ ଲେଡ଼ି ଭେଟ ନ ପାଇଲା ।
ଅନୁସରି ବନରେ ଅନେକ ଦୂର ଗଲା ॥
ଖେଦଭରେ ଆସି ପୁରେ ବସିଛି ସନ୍ତାପେ ।
ଦରିଦ୍ର ଅମୂଲ୍ୟ ନିଧି ପ୍ରବେଶ ମର୍ମ୍ମେ ॥
ନବପ୍ରିୟ ଭାବ ଅନୁରାଗରେ ଶରଦ ।
ଦୂତି ମୁଖେ ଶୁଣି କୃଷ୍ଣ ପୁଲକିତ ଦେହ ॥
ହରଷ ବଢ଼ିଲା ଉତ୍ସାହରେ ଛନ୍ନ ଛନ୍ନ ।
ଅନୁଗତ ଭାବ ଉଦବେଗ ଘନ ଘନ ॥
ହେମହାର ଦେଇ ଗଳାରୁ କାଢ଼ିଦେଲେ ।
ଅନେକ ବିନୟେ ମିଷ୍ଟ ବଚନ କହିଲେ ॥
ମନୋବନ୍ଦୀ-ଗଡ଼-ସନ୍ଧି କବାଟ ଫେଡ଼ିଲେ ।
କାମାନଳ ଦହନରେ ଅମୃତ ଇଡ଼ିଲେ ॥
ଚାଲ କେମାଦେଈ ପାଶେ ଥିବ ଯେଉଁଠାଇଁ ।
ଦାସୀ ବେଶ କରି ମୋତେ ଆଣିବ ଭେଟାଇ ॥
ଦୂତି ବୋଲେ ଅନ୍ତଃପୁର ଆକଟ ଅପାର ।
ନାନାରୂପେ କଇତବେ ପଶି ତ ନ ପାର ॥
ଯେ ଅଗମ୍ୟ କଥା ବାବୁ କରିବାକୁ କହ ।
ମାସ ଉପବାସୀ ହୋଇ ପାରଣା ନ ସହ ॥
କାଲି ବନେ ସୂର୍ଯ୍ୟପୂଜା ବେଳେ ଭେଟହେବ ।
ଏହି ରାତିରକ ମାନ ଦୁଃଖେ ସୁଖେ ଥିବ ॥
ଏତେ ବୋଲି ହାତ ଧରି ପାଟଚ୍ଛି ଆସଇ ।
ବୋଧି କହି ଶୟନ ମନ୍ଦିରେ ପ୍ରବେଶଇ ॥
ଏମନ୍ତେ ରଜନୀ ପାହି ତପନ ଉଦୟେ ।
ନାନ୍ଦୀମୁଖୀ ଆସି ମିଳେ ବଳରାମ ଠାଏ ॥
ମଧୁର ବଚନେ ମନ ପ୍ରମୋଦ କରାଇ ।
ଏ ଗୋପ ନବରେ ପାଟଛନକୁ ଧରାଇ ॥

ବୃଦ୍ଧ ପିତା ଭରା କରୁ ଉପହାସ କରାଅ ।
ଏହା ନ କରନ୍ତ ବନେ ବାଛୁରୀ ଚରାଅ ॥
ବନ୍ଧୁ ଦେଖା ଦେଖି ସାନ କଥା ନ କରିବେ ।
ଏତେ ଜଞ୍ଜାଳକୁ ପିତା କେମନ୍ତେ ପାରିବେ ॥
ଗୋଧନ ପାଳନ୍ତ ଗୋପ ଶାନ୍ତିହିଁ କରିବ ।
ତେବେ ମିନା ନନ୍ଦ ଅଶକତରୁ ତରିବ ॥
କଂସ ଆଜ୍ଞାରୁଆପଣେ ଆସିଅଛୁ ନେଇ ।
ଆଜ ଯିବେ ମଥୁରା ସୁନାଅଁ ଧନ ଦେଇ ॥
ସାଜ ଉପଯୁର କର ତୁମ୍ଭେ ଆଜ ଯାଇ ।
ଏକା ବାଳମେଳେ କୃଷ୍ଣ ରଖ ବଚ୍ଛ ଗାଈ ॥
ହଉ ବୋଲି ବଳରାମ ସନମତ କଲେ ।
ଶ୍ରୀଦାମକୁ ଘେନିଣ ଆସ୍ଥାନ ଚଳେ ଗଲେ ॥
ଚହୁଁ ନାନ୍ଦୀମୁଖୀ ପାଇଁ କୃଷ୍ଣ ପାଶେ ମିଳି ।
ବୋଲେ କାଲି ସହିଁକ ଉଚ୍ଛାହ ଅଛୁ ବଳି ॥
ଠାକୁରାଣୀ ଆଜ୍ଞା କରି ସୁଫଳ ହୋଇବେ ।
ବଳାଇ ରହିଲେ ଆଜ ଏକା ତୁମ୍ଭେ ଯିବ ॥
ଶୁଣି କୃଷ୍ଣ ହରଷକୁ କେ ପାରିବ କହି ।
କାନନେ ଗମନ ନାନ୍ଦୀମୁଖୀ ମୁଖ ଚାହିଁ ॥
ଗୁରୁ ପୁଷ୍ୟା ମାଧବ ଏ ରାଧା ନକ୍ଷତ୍ରରେ ।
ମିଳିଯୋଗ ହେବ ଶୁଭ ମିଥୁନ ଲଗ୍ନରେ ॥
ଦିନେଶ ଦିବସ ଘଟାଇଣ ମେଶଭୋଗ ।
ବସନ୍ତ ସମୀର ଧୀର ଅନୁକୂଳ ଯୋଗ ॥
ଗୋବଚ୍ଛ ଗୋପାଳ ବାଳ ଘେନି ସଙ୍ଗେ ଚଳି ।
ଗନ୍ତପଥ ଅନୁସରି କୁଣ୍ଡ କୂଳେ ମିଳି ॥
ବଚ୍ଛ ରଖି ନାନାଲୀଳା ରଙ୍ଗେ ବିହରେ ।
କେମାଦେଶ ଗମନ ପଥକୁ ଅନୁସରେ ॥
ଏଥି ଅନନ୍ତରେ ରାଧା ପାଶେ ମିଳେ ବୃନ୍ଦା ।
କହଇ କୃଷ୍ଣ ଚରିତ ଅନ୍ତରଙ୍ଗ ପ୍ରୀତି ॥
ଏ ଭୂମର ରୂପଗୁଣ ବୃନ୍ଦା ଚହୁଁ ଶୁଣି ।
ଯେତେ ସୁଖ ଭୋଗ କୃଷ୍ଣ କରୁଛନ୍ତି ନ ଜାଣି ॥
କଶୋର ବୟସ ନବ ବିରହ କାତରେ ।
ଲଳିତ ଲହୁଲି ଅଙ୍ଗ ଅନଙ୍ଗ ଘାତରେ ॥
ତୋର ନାମ ଯେନା କରି ରଣେ ଅଛୁ ରହି ।
ଅହର୍ନିଶ ଭାବେ ପଦ୍ମ ଚନ୍ଦ୍ରମାକୁ ଚାହିଁ ॥

ସାହା ହୋଇ ଦାରୁଣ ମଦନ ଭୟ ଖଣ୍ଡ ।
ନୋହିଲେ କରିବ କାଣ୍ଡେ ଖଣ୍ଡ ଖଣ୍ଡ ପିଣ୍ଡ ॥
ଗୋବଚ୍ଛ ଚରାଇ ବନେ ବସି ଚହୁଁ ଅଛି ।
ବିଳମ୍ବ ନ କରି ବେଗେ ଚଳ ଗୋ ମୃଗାକ୍ଷି ॥
ବୃନ୍ଦ ଚହୁଁ ଶୁଣି ପ୍ରାଣନାଥର ବିରହ ।
ଉକଣ୍ଠିତା ହୋଇ ଘେନ ସଜନୀ ସମୂହ ॥
ସ୍ନାନ ସୁବେଶ ହୋଇଣ ଦେବାର୍ଚ୍ଚନେ ବିଜେ ।
ମଙ୍ଗଳ ଅର୍ଚ୍ଚନେ ହୁଳହୁଳ ଯନ୍ତ୍ରବାଜେ ॥
ଜୟଶଙ୍ଖ ମହୁରୀ କାହାଳ ସାରିରବା ।
ଡମ୍ଫ ତାଳ ଅମୃତ ସେନଣ ସେଥି ସେବା ॥
ଖଦ ପଙ୍ଖା ଚାମର କେ ବରଣୀ ବିଞ୍ଚଇ ।
ପାଏଡ଼ା ପାଡ଼ଣ କେହୁ କୁସୁମ ସିଞ୍ଚଇ ॥
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଦ୍ୱିଜନାରୀ ।
ଦଧିମାଛ ସ୍ୱର୍ଣ୍ଣକୁମ୍ଭ କେହୁ ଆଗେ ଧରି ॥
ରାଜହଂସ ଦେଖାଇ କେ ପାରୁଆ ଉଡ଼ାଇ ।
କୃଷ୍ଣ ରୂପ ଚିତ୍ର କେମା ଚରଣ ବଢ଼ାଇ ॥
ବେତ ଧରି କେଉଁ ନାରୀ ଖଣ୍ଟିଆ ଡାକରେ ।
ମହିମା ମହିମା କେ ଡାକଇ ଉଚ୍ଚ ସ୍ୱରେ ॥
ଧୀରେ ଧୀରେ କେଉଁ ନାରୀ ହେଣ୍ଡ ମଣାଇଁ ।
କେବଳ ନିବେଶ କରି ଯୋଡ଼ଣ ଜଣାଇଁ ॥
ଧୂପକାଠି ଦର୍ପଣ କେବଣ ନାରୀ କରେ ।
କେ ମାନ ପରଖ କେ ବଢ଼ଆଳଟି କରେ ॥
କେ ଛନ୍ଦ ଚାମର ଧରେ କେ ମେଘାଡମ୍ବର ।
ମଣ୍ଡିନ ହୋଇଛି ଶୋଭା ଅବନୀ ଅମ୍ବର ॥
କେହୁ ଝରାନାଳୁଆ କେ ବସନଟଙ୍କ ଡ଼ି ।
କେହି ଅଳଙ୍କାର ପୂଜାସଜ ଚନ୍ଦ୍ରପେଡ଼ି ॥
ନଇବେଦ୍ୟ ଅଶନ କେ ଘେନାଇ ଚଳାଇ ।
କେହି ଧାରୀ ଶୁକ ପିକ ପିଞ୍ଜରୀ ଧରଇ ॥
ମାଜଣା ଯୋଗାଡ଼ ପୀଠ ଚଉକୀ ପାଦୁକା ।
ନାନାବିଧ କଉତୁକେ କେବନ ନାୟିକା ॥
କର ପ୍ରସାରଣ ଅନୁସର କେହି ବାଳୀ ।
କାହା କରେ କର ଦେଇ ଧୀରେ ଧୀରେ ଚାଲି ॥
ଏମନ୍ତ କାନନେ ଯାଇ ପ୍ରବେଶ ହୋଇଲେ ।
ଜନକରେ ଘେନି ବୃନ୍ଦା ଧାଉଁଛନ୍ତି ଅଇଲେ ॥

କେତକୀ କୁସୁମ ଛତ୍ର ଚମ୍ପାପୁଷ୍ପ କମେ ।
ଭୃଙ୍ଗର ବାରଣେ ଶିରେ ଧରିଲେ ସୁଷମେ ॥
ଖଗମୃଗ ଉତ୍ସୁକରେ ଧାମନ୍ତି ହରଷେ ।
ଚନ୍ଦ୍ର ଲତା ପ୍ରଫୁଲ୍ଲିତ ଗଉର ବକଷେ ॥
ବିଦ୍ୟୁଲ୍ଲତା ଜ୍ୟୋତ୍ସ୍ନା ଜିଣି ହରି ଛନ୍ନ ଛନ୍ନ ।
ଠାକୁରାଣୀ ବିକେ ଜାଣି ଛନ୍ନ କୃଷ୍ଣ ମନ ॥
ତରୁ ତରୁ ଉତ୍ସବେ କଦମ୍ବ ଶାଖେ ଉଠି ।
ଜେମାଦେଇ ଗମନରେ ନିବେଶିଣ ଦୃଷ୍ଟି ॥
ତଳେ ମଧୁମଙ୍ଗଳ ସୁବଳେ ହରି ଘାଟେ ।
ଭୋ ମିତ ଏ ହର୍ଷିତ ସମୁଦ୍ର ଘୋଟିଆସେ ॥
ଏତେ ବୋଲି ବେଗେ ବେଗ ବୃକ୍ଷରୁ ଖସିଲେ ।
ଦେଖିଣ ସୁବଳ ମଧୁମଙ୍ଗଳ ହସିଲେ ॥
ଯାହା ଶୋଭା ଶୁଣି ଏହୁ ତରଳ ବହଇ ।
ତାହା ରୂପ ଦେଖିଣ ଏ କେମନ୍ତେ ରହଇ ॥
ସମୁଦ୍ର ନୁହଇ ହରି ଜେମାଦେଈ ବିଜେ ।
ଲାବଣ୍ୟବାରିଧି ରାଧା ସଖୀଗଣ ମଝେ ॥
ହୁଳହୁଳି ଗୀତ ବାଦ୍ୟ ସିନ୍ଧୁ ଘୋଷ ଜାଣି ।
ଲହରୀ ପରାୟେ ଦିଶେ ଏ ଭ୍ରମରଶ୍ରେଣୀ ॥
ଅକଳିତ ଗୁଣାବଳୀ ଗମ୍ଭୀର ତରଙ୍ଗ ।
କୃଷ୍ଣବେଣୀ ନଦୀତଟ ଭେଟଣ ସଂଯୋଗ ॥
ଭାଳେ ଟିକ ବାଳମିତ୍ର ଉଦୟ ପ୍ରକାଶେ ।
ନେତ୍ର ମତ୍ସ କୁଚ କଚ୍ଛ ପରି ପୃଷ୍ଠ ଦିଶେ ॥
ଚନ୍ଦ୍ର ସ୍ୱାତି ନାସା ମୋତି ଦନ୍ତପନ୍ତି ସଦ୍ମେ ।
ମୁଖହାସ ଓଷ୍ଠ କୋକନଦ କଇଁ ପଦ୍ମେ ॥
ସୁବାହୁ ମୃଣାଳ ଗ୍ରୀବ ଶଙ୍ଖ ଶୋଭା ଦିଶେ ।
ହୃଦୟରେ ମୋତିହାର ସୁରନଦୀ ମିଶେ ॥
ଆଭରଣ ରତ୍ନକରେ ରତ୍ନାକର ନାମ ।
ଭଉଁରୀ ନାଭି ତ୍ରିବଳୀ ତ୍ରିବେଣୀ ସଙ୍ଗମ ॥
ବାଳିବନ୍ତ ଜଘନ ଏ ଚନ୍ଦ୍ରଭାଗା ନଖ ।
ଏହୁ ତୀର୍ଥ ଆଶ୍ରେଣ ଖଣ୍ଡଇ କାମଦୁଃଖ ॥
ଫେନଚିହ୍ନ ଚଉଳ ଯେ ନାବ କି ଭାସଇ ।
ସାଢ଼ୀଘର ଚଳନ୍ତେ ଏ ବୋଇତ ଆସଇ ॥
ମୁକୁର ଚନ୍ଦ୍ରମା ରାମା ଅନୁସରି ରହେ ।
ଅନେକ ରୂପକ ସିନ୍ଧୁ ଏକ ଠୁଳ ହୁଏ ॥

କାଳିନ୍ଦୀ ନଦୀ ରୂପରେ ତୁମ୍ଭେ ଯାଇ ମିଶ ।
ସମ୍ପର୍କିତ ହେଲେ ହୁଏ ମହା ସୁଖ ରସ ॥
ଧଇର୍ଯ୍ୟ ମନ୍ଦରଗିରି ବାହୁ ରଜ୍ଜୁଛନ୍ଦେ ।
ମନ୍ଥନ କରି ପୟୋଧି ସୁରାସୁର ମଧ୍ୟେ ॥
ନାନାରସ ଜାତ କରି ସୁଧା ପାନ କର ।
ଦାରୁଣ ମଦନବାଣ ବ୍ୟଥା ତାପ ହର ॥
ପାରିଲେ ଭରସା କର ନ ପାରିଲେ ଘୁଞ୍ଚ ।
ଗୋବର୍ଦ୍ଧନ ତଳେ ଉଠି ଲତା ତଳେ ଲୁଚ ॥
ଅନ୍ୟ ନାରୀ ନୁହନ୍ତି ଯେ ଗୃହାନ୍ତେ ମୋହିବୁ ।
ଆଜ ସେ ଜାଣିବ ଧୈର୍ଯ୍ୟ କେମନ୍ତେ ରହିବୁ ॥
ନୃପତିଦୁହିତା ଏ ଯୁବତୀଶିରୋମଣି ।
ଯେବେ ବଶ କରିବୁ ଏହାକୁ ବେଣୁପାଣି ॥
ନେବ ସେ ବହିବୁ ଶିରେ ଶିଖିପୁଚ୍ଛବାନା ।
ଏଠାରେ ନାଗର ପଣ ଜଣା ଯିବ ସିନା ॥
ହସି କୃଷ୍ଣ ଉଲ୍ଲସିଣ ବାନ୍ଧେ ବାହା ମାରି ।
ବୋଲନ୍ତି ଭୋ ମିତ ମୋତେ କଲ ତୁମ୍ଭ ପରି ॥
ଅଗ୍ନିକାଳେ କ୍ଷୀର ପୂରି ଉଚ୍ଛୁଳୁ ଯେ ଥାଇ ।
ଧୀର ହୋଇ ରହଇ ସେ ନୀର ସଙ୍ଗ ପାଇ ॥
ଶୀତକାଳେ ଜଳ ଛୁହିଁ ଶୀତେ କମ୍ପୁଥାଇ ।
ପଶିଣ ମଜ୍ଜିଲେ ଯେହ୍ନେ ଶୀତଭୟ ଯାଇ ॥
ସେହିରୂପେ ତାର ସଙ୍ଗ ହେବ ଯେତେବେଳେ ।
ତେତେବେଳେ ନାଶହେବ ବିକାର ସକଳେ ॥
କାମବ୍ୟାଧି ଚେଷ୍ଟା କରିଅଛି ନାନାମତେ ।
ରାଧା ଔଷଧରେ ବାଧା ନ କରିବ ମୋତେ ॥
ତୁମ୍ଭେ ଦୁଇ ମିତ୍ର ମାତ୍ର ସାହା ହୋଇଥିଲେ ।
ଏ ନୃପନନ୍ଦିନୀ ସଙ୍ଗ ଲଭିବ ମୁଁ ଭଲେ ॥
ଏମନ୍ତେ ଦୂତିକା ପାଶେ ମିଳି ହସ ହସ ।
କୃଷ୍ଣଙ୍କୁ ଚାହିଁଣ କହେ ବଚନ ସନ୍ଦେଶ ॥
ତୁମ୍ଭର ଚରିତ ଯେ ଜଣାନ୍ତେ ଜେମା ପାଶେ ।
ପଡ଼ିଲେଣି ଘୃତ ଯେହ୍ନେ ଜଳଇ ହୁତାଶେ ॥
ପୁଣ ପୁଣ ପୁଚ୍ଛଇ ମୋ ପ୍ରାଣନାଥ କାହିଁ ।
କହିଲି ବନରେ ଛନ୍ତି ତୋର ଭେଟ ପାଇଁ ॥
ମୋତେ ଆଗ ପେଷି ସଖୀ ସଙ୍ଗରେ ଆସଇ ।
ଉପାଧି ଦେଇଣ ତୋତେ ସଜନୀ ପେଷଇ ॥

ଶୁଣି କୃଷ୍ଣ ପୁଲକିତ କମ୍ପସ୍ତମ୍ଭ ଦମ୍ଭେ ।
ମିଳି ଉକତି କି କଥା ନ କହେ ଆରମ୍ଭେ ॥
ଏମନ୍ତେ ବୃନ୍ଦା ରାଧା ସ୍ଥାମୁରେ ଜଣାଇ ।
ବ୍ରଜେନ୍ଦ୍ରନନ୍ଦନ କୁଣ୍ଡ କୂଳେ ଛନ୍ତି ରହି ॥
ମୃଗୟା କରଇ ଶ୍ୟାମ କାମତମ ଘୋରେ ।
ଶ୍ୟାମଳ ମଞ୍ଜୁଳ ତନୁ ଉଜ୍ଜ୍ୱଳ ହାରରେ ॥
କଟିଘଣ୍ଟି ସ୍ୱରେଣ ସୁସ୍ୱରେ ବଂଶୀସ୍ୱନେ ।
ଶ୍ରବଣ ନୟନ ମତ୍ତ ହରିଣାକ୍ଷୀଗଣେ ॥
କଟାକ୍ଷ ବିଷମବାଣ ଭ୍ରୂଗୁପରେ ସନ୍ଧି ।
ଅପାଙ୍ଗ ଆକର୍ଣ୍ଣେ ପୂରି ମନ୍ଦହାସେ ମନ୍ତ୍ରି ॥
ସନ୍ଧିଲେ ମରମେ ବାଜି ବିବେକ ହଜଇ ।
ଦେଖି କାମକିରାତ ସେ ପୁଣି ପ୍ରହାରଇ ॥
ନ ପଳାଇ ଶ୍ରଦ୍ଧା ବନ୍ଧି . ବିପରୀତ ଏହି ।
ନିଜ ଧୈର୍ଯ୍ୟକୁ ତେଜି ସୁଧାଲୋଭେ ରହି ॥
ତୋତେ ଉଦ୍ଦେଶିଣ ହରି ଏ ବନେ ଲେଉଡ଼ି ।
ଲଭିଲେ ମୃଗୟା ଜୟ କରି ବାହୁଡ଼ି ॥
ସାବଧାନେ ହୋଇ ଏଥେଁ ବିଜୟ କରିବା ।
ବିଶ୍ୱାସ ସଜନୀ ପେଶି ଆଗରି ବରିବା ॥
ଲଳିତା ବୋଇଲେ ଏହା ବିଗୁରି ଅଟଇ ।
ଠାକୁରାଣୀ କହେ ଏହୁ ମନକୁ ଘଟଇ ॥
ବିଶ୍ୱାସ କରିଣ ତୁଳସୀକୁ ପଠିଆଇ ।
ଜାତିପୁଷ୍ପ ମାଳା ଯେ ଚନ୍ଦନ ପାନ ଦେଇ ॥
ହରଷେ ତୁଳସୀ ଘେନି ବନରେ ଚଳିଲେ ।
କେତେଦୂରେ କୁଣ୍ଡକୂଳ କୃଷ୍ଣଙ୍କୁ ମିଳିଲେ ॥
ଦୂରୁଁ ଦେଖି ସଖୀ ପଛଧର୍ମା ଲୁଚି ଦେଲେ ।
ଅବଲମ୍ବି ହରି କଳ୍ପପାଦପର ମୂଳେ ॥
ଦୂରୁଁ ଗୃହଁ ଦୂତି କହେ ଦେଖ ହେ ନାଗର ।
ରାଧିକାର ପ୍ରିୟସଖୀ ପ୍ରବେଶ ଆଗର ॥
ଶୁଣି କୃଷ୍ଣ ପାଟେଶ୍ରୁଟି ପହଣ୍ଡ ଦଣ ଆସି ।
ମୃଦୁ ମଧୁ ଲଳିତେ ତୁଳସୀ ହସି ହସି ॥
ବୃଷଭାନୁ ଜେମାଦେଈ ଏ ବରଣ ବିଧି ।
ଯେ ତୁମ୍ଭର ମନୋରଥ ହେବ ସର୍ବସିଦ୍ଧି ॥
ଶୁଣି ଶ୍ୟାମ ହେମପାନ ମସ୍ତକେ ଲଗାଇ ।
ସର୍ବାଙ୍ଗେ ଚନ୍ଦନ ଘେନି ମାଳାକୁ ଲମ୍ବାଇ ॥
ତାମ୍ବୂଳକୁ ଭୁଞ୍ଜିଣ ପ୍ରସନ୍ନମୁଖେ କହେ ।
କେଉଁଠାରେ ଜେମାଦେଈ ବିଜେକରି ରହେ ॥
ତୁଳସୀ ବୋଇଲେ ମୋତେ ସ୍ଥାମୁକୁ ପେଶିଲେ ।
ସଖୀଗଣ ଘେନିଣ ସେ ସୂର୍ଯ୍ୟସ୍ଥାନେ ଗଲେ ॥
ଶ୍ରୀକୃଷ୍ଣ ବୋଇଲେ ଭେଟ କେଉଁଠାରେ ହେବ ।
ତୁଳସୀ ବୋଇଲେ ତୁମ୍ଭେ ଏହିଠାରେ ଥିବ ॥
ସୂର୍ଯ୍ୟ ସ୍ଥଳେ ସକଳ ଯୁବତୀଗଣ ରଖି ।
କୁଣ୍ଡେ ବିଜେ କରିବେ ଘେନିଣ ପ୍ରାଣସଖୀ ॥
ବୃନ୍ଦା ଘେନି ବେନିଜନ ମିଳନ କରିବେ ।
ଲଳିତା ସଙ୍ଗେ ସଖୀ ଅପସରି ଛନ୍ତି ହେବେ ॥
ମନସିଜ ରହିଣ ସୁଫଳ କରାଇବେ ।
ବେନିଜନ ଚିର ମନୋରଥ ପୂରାଇବେ ॥
ମେଲାଣି ହୋଇଲେ ସିଦ୍ଧ ଠାକୁରାଣୀ ପାଶେ ।
ଶୁଣି କୃଷ୍ଣ ଅଶ୍ରୁଜଳ ହରଷେ ବରଷେ ॥
ନଖାଗ୍ରେ ସେ କାଳମାରେ ପ୍ରେମପଣ ଲହି ।
ମୋହେ ମୁଦ୍ର ଚନ୍ଦନ ଚୁମ୍ବନ ମୁଦ ଦେଇ ॥
ଗଳାମାଳା କମଳ ସହିତେ ଦୂତି କରେ ।
ଗୃହଁ କହି ପେଶିଲେ ସେ ତୁଳସୀ ସଙ୍ଗରେ ॥
ନେନି ଟେକି ଏ ହାରରେ ନୃପତି ଦୁହିଣୀ ।
ଏମନ୍ତେ ଭେଟିଲେ ଯାଇ ସେ ବେନି ତରୁଣୀ ॥
ପ୍ରସନ୍ନବଦନ ଦେଖି ପ୍ରଫୁଲ୍ଲିତ ରାଧେ ।
ବେନିବାମା ହରଷରେ ଜଣାଇ ସାନ୍ନିଧ୍ୟେ ॥
ଦେଖିଲୁଁ ନାଗରବର କୁଣ୍ଡକୂଳ ଭାଗେ ।
ବସିଅଛି ବନମାଳୀ ତୋର ଅନୁରାଗେ ॥
ସମୀର ସୁଗନ୍ଧେ ବହେ ତୋ ଅଙ୍ଗ ସୁଗନ୍ଧେ ।
ଚରଣ ପରାଗ ରେଣୁ ଘେନଇ ଆନନ୍ଦେ ॥
ଶିରରେ ଲଗାଇ ମାଳା ଗଳାରେ ବହିଲ ।
ଚନ୍ଦନ ଘେନି ଶୀତଳ ହୋଇଲି ବୋଇଲ ॥
ତାମ୍ବୂଳ ଚର୍ବିତ ହରି ମହାସୁଖ ପାଇ ।
·ଗଳାର କମଳମାଳା ଲେଖ ଲିହି ଦେଇ ॥
ବୋଲେ ବାଳା କୃଷ୍ଣମାଳା ହୃଦରେ ଲମ୍ବାଅ ।
କାମଦାବାନଳ ଜଳୁ ଅଛଇ ଲିଭାଅ ॥
ଶ୍ରୀହସ୍ତରେ ବର୍ଣ୍ଣାବଳୀ ପତ୍ରିକା ଦେଖାଅ ।
ଅମିୟ ସିଞ୍ଚିଣ ଖିନ୍ନ ଜୀବନ ରଖାଅ ॥

ଏତେ କହି ଶ୍ରୀକୃଷ୍ଣ ଉଲଗିମାଳ ଘେନି ।
ହୃଦୟେ ଲମ୍ବାଇ ଆଗେ ଲଗାଇ ମର୍ଦ୍ଦନୀ ॥
ଶ୍ରୀହସ୍ତେ ଶ୍ରୀଲେଖ ଘେନି ହୃଦୟେ ଲଗାଇ ।
ପ୍ରେମ ମୁଦ ଗୁହ୍ନିଁ ଭୃଙ୍ଗବିଦ୍ୟା କରେ ଦେଇ ॥
ମୁଦଫେଡ଼ ଚଢ଼ି କର୍ଣ୍ଣମୂଳରେ ଶୁଣାଇ ।
ନେନ୍ତ ପ୍ରେମଜଳେ କାଳୀ ନଖେ ଲେଖାହୋଇ ॥
ଗୁଣମଣି ପ୍ରାଣଧନୀ ଛାମୁକୁ ଚଳାଉ ।
ଚସ୍ତୁର କମଳେ ମନ ଭ୍ରମରେ ଖଞ୍ଜାଉ ॥
ବୃନ୍ଦାବାଣୀ ତରଙ୍ଗିଣୀ ବୁଡ଼ନ୍ତେ ମୁଁ ଭାସି ।
ଗୋଡ଼ାଇ ଓଗାଳ ଆଗେ କାମଗ୍ରାହା ଗ୍ରାସି ॥
ନାମଲତା ଅବଲମ୍ବ କରିଣ ରହିଛି ।
କୂଳେ ଆସିବାକୁ ମୋର ସଷ ନାହିଁ କଛି ॥
ଅଣକତ ଦେଖି କୂଳେ ଉଢଳିଲା ଯେବେ ।
ମନୋଭବ-ପରସ୍ତ ଉଚିତ ନୁହେଁ ତେବେ ॥
ନଖପନ୍ତି ଜାତି ପୁଷ୍ପ ମାଳ ଚହ୍ନ ବହି ।
ଚନ୍ଦନ ବୋଲ-ତାମ୍ବୁଳ ଭୁଞ୍ଜି ସୁଖ ପାଇ ॥
କଣ୍ଟାଜନ ବୋଲ ଚହ୍ନ ଦେଖନ୍ତେ ବହିତେ ।
ମଦନ ଦାରୁଣ ଖଣ୍ଡ ନ ଯାଇ ପରତେ ॥
ପୁଣି ପୁଣି ମରମେ ସନ୍ଧଇ ପଞ୍ଚବାଣ ।
ଉଢଳି ରଖିଲି ଲୋକେ ଆନ କରେ ପୁଣ ॥
ପାରିଲେ ସମ୍ଭାଳ ନ ପାରିଲେ ତହିଁ ମେଲ ।
ଅଣକେତ କୂଳେ ଲାଗି ଏତେ କଳବଳ ॥
ଅଙ୍ଗୀକାର ପରାଭବ ମହତ ଜନକୁ ।
ଦଣ୍ଡ ଭେଦ ନୋହୁ ଶ୍ୟାମ ବୁଝି ଯେ ଏଥକୁ ॥
କୋଳରେ ରଖିଣ କୁଚ କନ୍ଦରେ ଲୁଚାଅ ।
ଘୋଡ଼ାଇ ବଜ୍ରର ବାହୁ କାମକୁ ଦୂରାଅ ॥
ସଚେତ କର ଅଧରୁ ଦେଇ ସୁଧାପାନ ।
ନୋହେବ ସେ ରଖିବା ହେବ ଭାସିଗଲେ ଜନ ॥
ଉଦ୍ଧତ ଲେଖିଲି ମୋର ଦୋଷ କର କ୍ଷମା ।
ଏ ବେନି କାମିନୀ କହିବାରୁ ତ ଜାଣିମା ॥
ଶୁଣି ସାଇ ପୁଲକରେ ଅଶ୍ରୁଜଳ ବହି ।
କମ୍ପ ସ୍ୱେଦ ଗଦଗଦ କଣ୍ଠ ଜାଡ଼ି ବାହି ॥
ପୁଣି ପୁଣି ଲେଖି ଘେନି ଲଦଇ ସେ ହୃଦେ ।
ସ୍ତମ୍ଭ ହୋଇ ଆଗକୁ ଯେ ନ ଚଳଇ ପଦେ ॥

ଲଳିତା ବୋଇଲେ ଭୃଙ୍ଗବିଦ୍ୟା ମୁଖ ଗୁହ୍ନିଁ ।
ଆମ୍ଭ ପ୍ରତିଭାଷା ଦିଅ ବୃନ୍ଦାହାତେ ଲିହି ॥
ଶୁଣି ଭୃଙ୍ଗବିଦ୍ୟା ଯେ ଲେଖନପତ୍ର ଘେନି ।
ଲେଖିଲେ ସରସବାଣୀ ମନେ ମନେ ଗୁଣି ॥
ମୁଦ ଘେନି ଜେମାଦେଈ ହୃଦେରେ ଲଦିଲେ ।
ଉରଜ ଚନ୍ଦନ ଭାଳେ ଲଗାଇଣ ଦେଲେ ॥
ଘେନିଣ ହରଷେ ବୃନ୍ଦା ଚଳେ କୃଷ୍ଣ ପାଶ ।
ଦୂରୁ ଦେଖି ନାଗର ହୃଅନ୍ତି ହାସହାସ ॥
ବୋଇଲେ ହେ ବନେଶ୍ୱରି ମୋତେ ପରସନ୍ନ ।
ତୁମ୍ଭରେ ଯେ କରି ହୁଏ ଏତେ କଥାମାନ ॥
ଗଗନଚନ୍ଦ୍ରମା କରଗତକୁ ଆଣିଲ ।
କି ଦେଇ ଶୁଝିବି ମୋର ଜୀବନ କିଣିଲ ॥
କାଳେ କାଳେ ତୁମ୍ଭରେ ଯେ ହୋଇଥିବି ଋଣୀ
ମହତ ବିବେକ ଜନ ବିପ୍ରୁଥୁ ଜାଣି ॥
କାମ କୋପାନଳେ ଚିରକାଳରୁ ଦଗଧ ।
ସୁରନଦୀ ବୃନ୍ଦାଇଣ ମିଳାଲ ସନ୍ନିଧି ॥
ଭସ୍ମ ଅଙ୍କୁରଇଲ ଅମିୟ ବାଣୀ ସିଞ୍ଚି ।
ପଲ୍ଲବ ପ୍ରଫୁଲ୍ଲଫଳ ଲଭେ କି ସରଞ୍ଚି ॥
ଶୁଣି ବୃନ୍ଦା ବୋଲେ ହସି ଶୁଣ ହେ ତମାଳ ।
ଧଇର୍ଯ୍ୟରେ ଥିଲେ ସମୟରେ ଲଭେ ଫଳ ॥
ଏଥେ ଶୁଣି ତୁମ୍ଭ ପ୍ରେମ ପତ୍ରିକା ସୁକେଶୀ ।
ବିକାର ବାଧନ୍ତେ ପଦେ ନ ପାରଇ ଆସି ॥
କି କି ଲେଖି ପତ୍ରିକ ତୁମ୍ଭଙ୍କୁ ଅଛି ଦେଇ ।
କୃତ କୃତ୍ୟେ ଘେନ ହରି କରାଞ୍ଜଳି ହୋଇ ॥
ଚନ୍ଦନ ତାମ୍ବୂଳ ମୃଗମଦ ଗରଗର ।
ଗୁହ୍ନିଁ ଲଗାଇ ଶିର ଚୁମ୍ବି ହୃଦୟର ॥
ପଢ଼ି ନ ପାରିଣ ସେହୁ ବୃନ୍ଦାକରେ ଦେଲେ ।
ସରସ ହରଷେ ବୃନ୍ଦା ପତ୍ରିକା ପଢ଼ିଲେ ॥
'ଜୀବବନ୍ଧୁ ଶୋଭାସିନ୍ଧୁ ପଦନଖ ଶଶୀ ।
ହୃଦୟ କୁମୁଦ ଚକ୍ଷୁ ଚକୋର ଲାଳସୀ ॥
ନବଜଳଧର ବରଷାରେ ନଦୀବଢ଼ି ।
ନିଜ ଦେହ ନିମଜାଇ ମହା ଜଳେ ପଡ଼ି ॥
ମନହଂସୀ ମିଳଣ ଆଶୀ ଶରଧା ବଢ଼ାଇ ।
ନୟନମୀନ ଅପାଙ୍ଗତରଙ୍ଗେ ବୁଡ଼ାଇ ॥

ଅନଙ୍ଗ ବାହନେ ନାଚେ କୁଣ୍ଡଳେ ଆକର୍ଷି ।
କରୁଣା-ବୋଇତେ ଏଥୁଁ ପାରକର ଆସି ॥
ପାଦପଦ୍ମ ପିଞ୍ଜରରେ ପୋଷିଣ ରଖିବା ।
ବିମ୍ବାଧର ସୁଧାପାନ ଦେଇଣ ତୋଷିବା ॥
ଲେଖା ଅପରାଧ କ୍ଷମା କରିବା ହୋଇବ ।
ନେମାରେ ଦଇନ୍ୟ ବୃନ୍ଦାଦେବୀ ଜଣାଇବ ॥
ଶୁଣି ହରି ତନୁ ଘାରି ପ୍ରେମେ ଜର ଜର ।
ଭାବମାର ଭାବଭାଷା ଭାବ ଗର ଗର ॥
ବନେଶ୍ୱରୀ କର ଧରି ସନ୍ତରେ ପୁଛଇ ।
କହ କହ ରସମୟୀ କି କହୁଅଛଇ ॥
ବୃନ୍ଦା ବୋଇଲ ରାଧା ଏହା ବିନୟେ କହିଛି ।
ଅବୋଧ ନାୟିକା କାନ୍ତ ଅଭୋଗ୍ୟ ହୋଇଛି ॥
ଅଜାଅର ଲଳିତ ଲହୁଲ ନବବାଳା ।
ନାହିଁ ଅନୁଭବ ନବ ମନୋଭବ କଳା ॥
ସେବା ଅପରାଧ ଦୋଷ ମନରେ ନ ଘେନ ।
ସାରି ଶୁକ ପଢ଼ାଇ ସୁସ୍ୱରୁବାଣୀ ଶୁଣି ॥
ସୁଧାନିଧି ସଙ୍ଗ ଯେହ୍ନେ ଭୁଞ୍ଜନ୍ତି ଦେବତା ।
ରସ ରଖି ରସ ଭୋଗ କର ନିଜ କାନ୍ତା ॥
ସମାଗମ ପ୍ରଥମେ ଗୁଆଁରି ନାରି ଦଶା ।
ଜାତ ହୁଏ ଲଜ୍ଜା ଛନ୍ନମନ ଅଭରସା ॥
କ୍ରମେ କ୍ରମେ ଲତା ବଢ଼ି ତରୁକୁ ବେଢ଼ଇ ।
ଏକାବେଳେ ବେଢ଼ାଇବା ଲୋଡ଼ିଲେ ଛାଡ଼ଇ ॥
ତୁମ୍ଭେ ତ ରସିକବର କସ ବା ଅଧିକେ ।
ଶୁଣି କୃଷ୍ଣ ଈଷିତେ କମ୍ପଇ ଅଙ୍ଗ ଝାଙ୍କେ ॥
କେତେବେଳେ ପ୍ରବେଶ ହୋଇବେ ଜେମାଦେଇ ।
ଦର୍ଶନ କରିବା ଯେ ଗ୍ମୁରେ କସ ଦେଇ ॥
ମୋହଠାରେ ଅନୁଗ୍ରହ ଅଛିଟିକି ବୃନ୍ଦେ ।
କୃପା ଅବଲୋକନେ ହସିବ ମନ୍ଦେ ମନ୍ଦେ ॥
କି ଅବା ମାନିନୀ ହୋଇ ମୁଖେ ମସି ମଣ୍ଡି ।
ପାଦ ଅଗ୍ରେ କ୍ଷିତି ଘଷି ପଣତେ ଓହାଡ଼ ॥
ଏମନ୍ତ ଅନ୍ତର ସେ ଦେଖିଲେ ମନମଥ ।
ନିମିଷେ ବିଶ୍ରାମ ନ କରିବ ଶରପଥ ।
ଆଗମ ଜାଣି ପାରୁଛି ନ ଗଲା ଯା ଏଥୁଁ ।
ଏହି ଅପରାଧ ଘେନ ଲେଉଟିଲେ ପଥୁଁ ॥

ଦାରୁଣ ମଦନ ଆଜ ରଖିବ କି ଭଲେ ।
ନ ପୁଣ ନ ଆସନ୍ତି ମୋ କରମ ବିଫଳେ ॥
ରମ୍ୟ ସ୍ଥାନ ଦେଖି ଶ୍ରମେ ଶ୍ରମ ପାଇ ରହି ।
ବନଜୀବ କଉତୁକ ଦେଖେ ଅବା କାହିଁ ॥
ଗୁରୁଜନ ଦେଖି ଅବା ପଥ ନିରୋଧିଲେ ।
ଭୟ ଦେଖାଇଣ ଅବା ସଖୀ ନିଷେଧିଲେ ॥
ମୋରେ ବାମ ହୋଇ କାମବାଣେ କି କଟାଳ ।
ଜାଣୁଅଛି ମୋହର ହୃଦୟ ପରିକଳ ॥
ଯାଅ ଯାଅ ବୃନ୍ଦା ବେଗେ ଆଣ ପ୍ରାଣସଖୀ ।
ନିମିଷକ କୋଟିଯୁଗ ହେଉଛି ନ ଦେଖି ॥
ବୃନ୍ଦାଦେବୀ ବୋଲେ ହରି ନୁହସି ଆରତ ।
ଏହିକ୍ଷଣି ଠାକୁରାଣୀ ଆଶିବ ତ୍ୱରିତ ॥
ଏତେ କହି ବୃନ୍ଦାଦେବୀ ଶୀଘ୍ରହୋଇ ଗଲେ ।
ସୂର୍ଯ୍ୟସ୍ଥଳେ ଜେମାଦେଇ ସନ୍ନିଧିରେ ମିଳେ ॥
ଦୂରୁ ରହିଁ ବୋଲେ ରାଇ ଆସ ଆସ ପାଶେ ।
ଏକାନ୍ତରେ କହ କଥା ମରମ ବିଶ୍ୱାସେ ॥
ପ୍ରାଣନାଥ ଦର୍ଶନ ପାଇଲ କେଉଁଠାରେ ।
କେଉଁ ଅବକାଶରେ କେମନ୍ତ ବେଶ ଧରେ ॥
ଆଦରେ ପତ୍ରିକା ପଢ଼ି କସ ଆଜ୍ଞା ଦେଲେ ।
ଅନ୍ଧକୁ କି ଉଦ୍ଧାରିବା ଅଙ୍ଗୀକାର କଲେ ॥
ବୃନ୍ଦାଦେବୀ ବୋଲେ ଧୀରେ ଶୁଣ ଗୋ ରାଧିକେ ।
ଯେତେ ପୁଛାକଲୁ ସେହୁ ତୋ ତହୁଁ ଅଧିକେ ॥
ଶ୍ୟାମକୁଣ୍ଡ କୂଳେ ତରୁ ଅବଲମ୍ବେ ଉଭା ।
ନଟବର ବେଶ ତୋର ମଣି ଉରେ ଶୋଭା ॥
ଏହିହରେ ଶ୍ରବଣ ନୟନ ଅଛି ଡେରି ।
ଆଗକୁ ପାଏ ଆସିଣ ପଛ ଅନୁସରି ॥
ଆବେଶେ ଉତ୍ସାହ ଚିତ୍ତ ଧରି ନ ପାରଇ ।
ନିଭୃତେ ପଲ୍ଲବଶଯ୍ୟା ରଚନା କରଇ ॥
ପବନେ ପତନେ ବିଚଳିତ ସଚକିତ ନେହେ ।
ଧାଉଛି ଆସି ନ ଦେଖି ଖେଦ ଚିନ୍ତା ଚିତ୍ତେ ॥
ଏକା ହୋଇ କାନନେ ଭ୍ରମଇ ତୋତେ ଖୋଜ ।
ନ ଦେଖି ବନ୍ଧୁ ମନେ ଖରଶ୍ୱାସ ତେଜ ॥
ମୋତେ ଦେଖି ପାରୁଛି ଆସିଣ ଗଲେ ଘେନ ।
ଆଦରେ ପତ୍ରିକା ଘେନ ଲଗାଇ ମୂର୍ଦ୍ଧନ ॥

ଲୋକଙ୍କେ ନ ପାରି ପଡ଼ି ମୋତେ ପଢ଼ାଇଲେ ।
ଶୁଣି ବେଣୁଁବେଳ ଅନୁରାଗ ବଢ଼ାଇଲେ ॥
ବେଗେ ଘେନିଆସ ବୋଲି ପଠିଆଇ ମୋତେ ।
ମନମଥ ଘାଟେ ପଥ ଚାହୁଁଥିବେ ତୋତେ ॥
ବିଳମ୍ବ ନ କର ସଖି ବେଗ ହୋଇ ଯିବା ।
ପ୍ରାଣନାଥ ବିରହ-ଅନଳ ଲିଭାଇବା ॥
ପୂଜାସ୍ଥଳେ ସକଳ କାମିନୀଗଣ ରଖି ।
ସଙ୍ଗରେ ଘେନିଲେ ଏକା ପ୍ରାଣପ୍ରିୟ ସଖୀ ॥

ଛଦ୍ମରେ ବନରେ ପଶିଲେ ପୁଷ୍ପ ତୋଳି ।
ବୃନ୍ଦା କର ଧରି ପଥେ ଯାଉଁ ଯାଉଁ ଭାଳି ॥
ଦିନେହେଁ କୃଷ୍ଣଙ୍କୁ ସଖୀ ଦେଖିଲି ଯେ ନାହିଁ ।
ଛନ୍ନ ହୋଇ ସଲଜ୍ଜାରେ ନ ପାରିବି ଚାହିଁ ॥

ସ୍ମିତମୁଖ ପୋତି ସ୍ତବ୍ଧ ରହନ୍ତେଣ ହରି ।
ରୁଷ୍ଟ କରି ଇଷିତେଣ ନେବେ କୋଳ କରି ॥
କେଶ ଆଉଁସିଣ ମୁଖେ ଦେବେ ଯେ ଚୁମ୍ବନ ।
ସଖି ତେତେବେଳେ ଦେହେଁ ଥିବ କି ମୋ ଜ୍ଞାନ ॥
ମୋର ଉରଜସଂପୁଟେ ମନ ଥିବେ ରଖି ।
ଘୋଡ଼ାଇ ଲୋଡ଼ନ୍ତେ ପୁଣ ପୁଣ ଫେଡ଼ି ଦେଖି ॥

ଉରେ ଉର ଲଗାଇ ଭିଡ଼ିବେ ନିବିଡ଼ରେ ।
ଭ୍ରମେମାନେ ହସୁଥିବ ଲତା ଉହାଡ଼ରେ ॥
କୁଞ୍ଜଗୃହ ଗତେ ଦେଇ ତାଙ୍କର ଆସୁତେ ।
ବାହୁଡ଼ିବ ଲାବଣ୍ୟ ସାଗରେ ମେଲି ମୋତେ ॥

ବିବେକ ଧଇର୍ଯ୍ୟ ଧୀର ଆଗେ ପଳାଇବେ ।
ଶିଖାଇଲ ଚରିତ କପାଇଁ ମନେ ଥିବେ ॥
ମନସିଜ ତାଡ଼ନିଆ ହୋଇଥିବ ବାଦୀ ।
ଚେତନା ବୁଡ଼ାଇ ହରାଇବ ମନୋବୁଦ୍ଧି ॥
ଉତ୍କଣ୍ଠିତା ହୋଇ ରସେ ଭାସଇ ସୁକେଶୀ ।
ସଖୀ ସେ କହନ୍ତେ ଜାଣି ଘେନାଇ ବିଶେଷି ॥

ଏମନ୍ତେଣ କୁଞ୍ଜକୂଳେ ପ୍ରବେଶ ହୋଇଲେ ।
କେତେ ଦୂରେ ରହି କୃଷ୍ଣ ରୂପକୁ ଚାହିଁଲେ ॥
ତମାଳ ତରୁ ତଳରେ ଚିକ୍କଣ କାଳିଆ ।
ପୀତପଟ ଶିଖୀ-ପୁଚ୍ଛ ମୁକୁତାମାଳିଆ ॥

ବେଣୁନାଦ ଗମ୍ଭୀର ମଧୁର ମୃଦୁହାସେ ।
ମେଘ ନଗ ନଦୀ ମହାରୂପ କି ପ୍ରକାଶେ ॥
ଚକିତେଣ ଛନ୍ନ ହୋଇ ବୋଲେ ମହାଦେଇ ।
ଶାଢ଼ୀଘେରି ନଭେ ନବଘନ ଉଦେ ହୋଇ ॥
ବୋଲେ ବୃନ୍ଦା ଶୁଣ ରାଧେ ସ୍ୱରୂପ ବଚନ ।
ଏହି ଶ୍ୟାମଘନ ଉଦେ ତୋ ତାପମୋଚନ ॥
ଶିଖେଣ ଶିଖଣ୍ଡୀ ଶକ୍ରକୋଦଣ୍ଡକୁ ଜିଣି ।
ପୀତାମ୍ବର ସୁନ୍ଦର ରୁଚିର ବେଣୁପାଣି ॥
ମନସିଜ ସୁରରାଜ ଧନୁ ଘଡ଼ଘଡ଼ ।
ବିଷମବାଣେ ଧଇର୍ଯ୍ୟ ଦଳ ଦର୍ପ ହରି ॥
ଉପହାର ବକମାଳା ଘନେ ଶୋଭା ଦିଶେ ।
କାମଦାବାନଳେ ଘୃତସିକ୍ତ ଘୋଟି ଆଳସ ॥
ଏ ଘନକାଳରେ ସଖି ସୁଖୀ ସବୁ ଜନ୍ତୁ ।
ଲାବଣ୍ୟ ଅମୃତ ଚକ୍ଷୁ ଚାତକ ପିବନ୍ତୁ ॥
ତନୁ-ନୀପ ପ୍ରଫୁଲ୍ଲିତ ପୂର୍ଣ୍ଣକାମ-ହ୍ରଦେ ।
ବରଷାରେ ବିରହୀ-ମାନସହଂସୀ ମୋଦେ ॥
ଦେଖି ଦେଖି କୁଚ ହେମଗିରି ଘୋଡ଼ାଇବ ।
ଏହିକ୍ଷଣି ମଧ୍ୟେ ପ୍ରେମନଦୀ ବଢ଼ାଇବ ॥
ମେଘ ଛଳେ ଅରୁଣ ଅଧର ମୁଖଶଶୀ ।
ଭଲେ ନ ଦିଶିବେ ଏ ହୋଇଣ ମିଶାମିଶି ॥
ଇନ୍ଦ୍ରଗୋପ ତାମ୍ବୂଳରେ ଗଣ୍ଡଭୂମି ମଣ୍ଡି ।
ତେଣୁ ତୋର କୋକିଳ ବଚନ ବାହି ଜାଡ଼ି ॥
ଦେଖ ଶିଖେ ଶିଖୀକି ଏ ଟେକେ ଅଛି ପୁଚ୍ଛ ।
ଶ୍ୟାମଘନଛଳେ ବନ ଅନ୍ଧାର ପ୍ରତ୍ୟକ୍ଷ ॥
ସ୍ମରଶର ବରଧାରେ ଜରଜର ନୁହ ।
କୁଞ୍ଜ-ଅଟ୍ଟାଳିରେ କାନ୍ତକୋଳେ ସୁଖେ ରହ
ତମାଳ ଗହଳ ଏ କି ନିବିଡ଼ ରଜନୀ ।
ମୁଖଚନ୍ଦ୍ର ଔଜ୍ଜଲ୍ୟରେ ଚାଲ ଗୋ ସଜନୀ ॥
ଧୂର୍ତ ବୋଲେ ରାଧେ ବନକନ୍ଦରେ ଫୁଟାଉ ।
ଅଶଙ୍କିତେ ଚେତରେ ଉଠାଣି ଉଠାଉ ॥
ଦୂରେ ରହି ଚାହିଁଲେ ସେ ଦେଖିଲେ ସୁନ୍ଦର ।
ବୋଲେ ସଖୀ ସ୍ୱରୂପରେ ଏ ନୀଳକନ୍ଦର ॥
ଗିରିବର ଲକ୍ଷଣ ସାଦୃଶ୍ୟ ହୁଏ ଯେତେ ।
ଶୁଣ ତୁ ସକଳ ସଖୀ କହଇ ଅଗ୍ରତେ ॥

ଶିଖସ୍ପଶିଖରେ ଦେଖ ଶିଖୀଏ ଖେଳୁଛି ।
ଜଳଦ-ଚିକୁର ଚୂର୍ଣ୍ଣକୁନ୍ତଳ ଚଳୁଛି ॥
ବଦନ-ଚନ୍ଦ୍ରମା ଉଦେ ସର୍ବ ଆହ୍ଲାଦେ ।
ହଂସାତେଜ ସିଂହ ନାଚେ ମୃଗ ସଙ୍ଗେ ମୋଦେ ॥
ଚକ୍ଷୁ ମୃଗ ନାସା ଶୁକଚଞ୍ଚୁ ମୋହିଫଳ ।
ଓଷ୍ଠ ପକ୍ୱବିମ୍ବ ଦୃଢ଼ମତେଣ ନିଶ୍ଚଳ ॥
ଗ୍ରୀବଣ ଲବଣ୍ୟ ଶ୍ୟାମଳତା କଣଳସେ ।
ବସନ୍ତ-କୁଣ୍ଡଳପକ୍ଷୀ ଦୋଳ ଖେଳେ କଏ ॥
ଦଶନ ଦାଡ଼ିମ୍ବବୀଜ ଫାଟିଣ ଦଶନ୍ତି ।
ଗଣ୍ଡସ୍ଥଳ ମର୍କତ ମୁକୁର ଶୀଳାଭ୍ରାନ୍ତି ॥
କଳକଣ୍ଠ ବଚନ ଏ ବେଣୁରନ୍ଧ୍ର ଗୀତେ ।
ସମୀର ସମୀର ଭେଦୀ ସୁସ୍ୱର ମଣ୍ଡିତେ ॥
ହସ୍ତ ହସ୍ତୀଶୁଣ୍ଡ ପଦ୍ମ ପଲ୍ଲବ ବଳୟେ ।
ସୁବାସେ ତୁଳସୀପୁଷ୍ପ ଅଗରୁ ମଳୟେ ॥
ବକ୍ଷସ୍ଥଳ ବିସ୍ତାର କୌସ୍ତୁଭ ରତ୍ନହାରେ ।
ଗଙ୍ଗାଦ ଅଗସ୍ତି ବନ୍ଧ ମିତ୍ର ଅଭିସାରେ ॥
ବ୍ୟାଘ୍ରନଖ ପଦକ ଏ ରତ୍ନଶୀଳାଚୟେ ।
କଟିକେଶସ୍ତ୍ର ଦେଖି ସଖୀ କର ଭୟେ ॥
ନାଭିକୋଟର ଗମ୍ଭୀରେ ରହିଅଛି ବୁଡ଼ି ।
ସର୍ବ ଚିହ୍ନ ଦେଖାଇ ଲାବଣ୍ୟଲତା ଯୋଡ଼ି ॥
ନିତମ୍ବଯୁଗଳ ଭୃଙ୍ଗଶୃଙ୍ଗ ସୁଚଟ୍ଳ ।
ପାଦ କଳ୍ପପାଦପ ପଲ୍ଲବ ନବଦଳ ।
ନଖପୁଷ୍ପ ଅଷ୍ଟାଦଶ ଚିହ୍ନ ଫଳାମୃତ ।
ଅମୂଲ୍ୟ ସେ ଚତୁର୍ବର୍ଗେ ହୁଅଇ ଲଭିତ ॥
ଏ ଗିରି ଆଶ୍ରୟେ ଏହି ତରୁତଳେ ରହ ।
ପ୍ରେମଭାବ ଲଭି ରହ ଶାନ୍ତ କର ଦେହ ॥
ମଞ୍ଜୀର ମଞ୍ଜୁଳ ପକ୍ଷୀ କୂଜନ୍ତି ସୁନାଦ ।
ଧୂରଶାସ୍ତ୍ର ବଖାଣନ୍ତି ଶୁଣ ଏଥିଁ କାଣ ॥
ବୋଲେ ଗାଧି ବୃନ୍ଦେ ମୋର ତନୁ ତରଳାଉ ।
କାଳନ୍ଦୀନଦୀ ହ୍ରଦକୁ ଧଳଖି ବଳାଉ ।
ମନସିଜ-ସ୍ରୋତେ ପଶି ନ ପାରିବା ଆମ୍ଭି ।
କୂଳ ଗୁଡ଼ ଧରାଧର ହୋଇ ଯିବା ସର୍ବ ॥
ବିଷପାଣି ସ୍ଥିରମନରେ ଛାଳି ମାରିଲିବା ।
ହାକାଟକୁ ଗଲେ କି ଏ ନଦୀକୁ ତରିବା ॥

ଜାଣୁ ଜାଣୁ ପଡ଼ ଗଡ଼ ବୁଡ଼ିବା ଗଣ୍ଡରେ ।
ହାହାକାର କରୁଥିବେ ଏ ଗୋପ ଦାଣ୍ଡରେ ॥
ବୋଲଇ ସଜନୀ ସଖୀ ହେଲା ଚିତ୍ତ ଭ୍ରମ ।
ମଦନମୋହନ ନନ୍ଦନନ୍ଦନ ଏ ଶ୍ୟାମ ॥
ତୋର ରୂପ ଗୁଣ ଶୁଣି ଦ୍ରବଣ ବହିଲେ ।
ନିଜକୁଣ୍ଡେ ମିଶି କୁଣ୍ଡେ ସଙ୍ଗମ ହୋଇଲେ ॥
ବେଗରେ କାଳନ୍ଦୀନଦୀ ସ୍ୱରୂପେ ବହଇ ।
ଗୁଣବନ୍ତ ବଚନ ତ ଅନ୍ୟଥା ନୁହଇ ॥
ଶ୍ୟାମଳ ମଞ୍ଜୁଳତନୁ ନିର୍ମଳ ସଲିଳ ।
ନୀଳୋତ୍ପଳନେତ୍ର ମୁଖ ବିକଶେ କମଳ ॥
ମକରକୁଣ୍ଡଳ ଦେଖ ମକର ଖେଳୁଛି ।
ବେଣୀ କାଳୀ ଫଣୀ କି ଏ ଉଭାଶ ରହିଛି ॥
ନୀଳକଣ୍ଠ ନିକଟରେ ଦେଖି ନ ଚଳଇ ।
ଅଳକା କୁନ୍ତଳ ଜଳତନୁ ବିକାଶଇ ॥
କୋକନଦ ଅପାଙ୍ଗ କୁମୁଦ ହାସ ମୋଦେ ।
ବିକଶି ଦଶଇ ତୋର ମୁଖଚନ୍ଦ୍ର ଉଦେ ॥
ଭ୍ରୂଭଙ୍ଗ ସୁସଙ୍ଗେ ଭୃଙ୍ଗ ମକରନ୍ଦେ ବସି ।
ହେମ ଗୁଚ୍ଛେ ମୋତିମାଳା ମଦନ ବଡ଼ଶୀ ॥
ପଡ଼ିଲେ ନୟନମୀନ ଅପାଙ୍ଗେ ଛଟକ ।
ଅଧର ପ୍ରବାଳନାବେ ରହଇ ଅଟକ ॥
ହସ୍ତ କାତଦଣ୍ଡ ପୀତପଟ ଏ ଅଖାଳ ।
ହୃଦପୂରେ ମଣି ନାନାରତ୍ନବେଢ଼ା ଜାଲ ॥
ଝସଦୃଷ୍ଟି ପଡ଼ିଲେ କି ଉବୁଟିବେ ଏଥୁ ।
ସତେ ଉବୁଟିବୁଁ କାମେକେରୁଆଳ ହାତୁଁ ॥
ଚଞ୍ଚଳ ତରଙ୍ଗ ଏ ତ୍ରିଭଙ୍ଗୀ ଭଣାବାଙ୍କ ।
ଏହାର କିଙ୍କିଣୀ କଳରବ ହଂସ ବକ ॥
ମତ୍ସ୍ୟ କଚ୍ଛପାଦ ଅବତାର ଏ ଅବତାର ।
ନିତମ୍ବଯୁଗଳ ଦମ୍ପତି ଚକ୍ରବାକର ॥
ଘୂର୍ଣ୍ଣ ଅଛନ୍ତି ଗଭୀର ନାଭି ଯେ ଭଉଁରି ।
ଜାନୁଯୁଗ ପୁଳିନରେ ମଦନ ବିହାରି ॥
କୁଣ୍ଡଳି ନୂପୁର ମରଚରରବ ତୋରେ ।
ରାଜଛନ୍ତି ହଂସଗାମୀ ଚଳ ଗୋ ସଭରେ ॥
ଏ ନଦୀ ସ୍ନାନେଣ କାମଯମ ତାପ ନାଶ ।
ଚିରକାଳ ତୃଷା ହର ଲାଭଅ ହୃତାଶ ॥

ସୁଖେଣ ବିହର ନିଜ ପ୍ରାଣନାଥ ସଙ୍ଗେ ।
କାତର ନୋହିବ ସଖୀ ରତିକଳା ରଙ୍ଗେ ॥
ତବ ଭାବ ଭାବ ସେବା ସେବ ମନ ଜାଣି ।
ପତିବ୍ରତା ସାଧବୀ ତୁ ସତୀଶିରୋମଣି ॥
ଯାହା ଆଜ୍ଞା ଦେବୁ ତାହା କରିବୁଁ ନିଶ୍ଚୟ ।
ରସ ରଖି ଅନ୍ତରେ ନୋହିବୁ ପରିଚୟ ॥
ଅବ୍ୟୟ ବ୍ୟୟରେ ସଖି ମୁଦ୍ରିତ ହୋଇବୁ ।
ରତି ଅନ୍ତେ ଯେମନ୍ତେଣ ନୀରସ ନୋହିବୁ ॥
ପଳାଇ ଲୋଡ଼ନ୍ତେ ବ୍ରୀଡ଼ା ନ ଦେବୁଟି ଗୁଡ଼ ।
ଚାର ହେଲେ ଅନୁରାଗ ଦିନେ ଦିନେ ବଢ଼ି ॥
ବୋଲେ ଜେମା ଯେତେ ସଖୀ ଦେଲ ଉପଦେଶ ।
କେମନ୍ତେ ରଖିବ ଚିତ୍ତେ ଧୈର୍ଯ୍ୟ ହେଲ ଧ୍ୱଂସ ॥
ବୁଡ଼ିଗଲା ଜନର କି ରହେ ବୁଦ୍ଧି ଦମ୍ଭ ।
କରେ ଯାହା ପଡ଼ଇ ତା କରେ ଅବଲମ୍ବ ॥
ଏମନ୍ତେଣ ଶ୍ରୀକୃଷ୍ଣ ସନ୍ନିଧେ ଯାଇ ମିଳେ ।
ଗଙ୍ଗା ଯେସନେଣ ସିନ୍ଧୁ ସଙ୍ଗମେ ଉଚ୍ଛୋଳେ ॥
ମୁଖଚନ୍ଦ୍ର ଦୁହିଁ ଚକ୍ଷୁପଦ୍ମ ସଙ୍କୁଚିତେ ।
ଚରଣକମଳେ ରହି ବୁଡ଼ ଭୃଙ୍ଗମତେ ॥
ଜୀବଆତ୍ମା ନବବିଧ ମନ ନିଉଛାଳ ।
ପାଦପଦ୍ମ ପୂଜ ଯେତେ ବିବେକ ସଙ୍ଖାଳ ॥
ନଖଗଣେ ନିଜଗଣ ରୂପ ବିକାଶଇ ।
ଏମନ୍ତେ ସେ ଜେମା ଚିତ୍ତେ ଭ୍ରମେ ଆଶ୍ୱସଇ ॥
ଏକା କୃଷ୍ଣ ବିଜେ ବୋଲି ସଖୀଗଣ ଭଣ୍ଡି ।
ଏବେ କି ଯୁବତୀଗଣ ରହିଛନ୍ତି ବେଢ଼ି ॥
ଏମନ୍ତ ପୁରୁଷ ପାଇ ପଶୁପରମଣୀ ।
କହିଁାଇ ରହିବେ ପୂରେ ଦିବସ ରଜନୀ ॥
କାର୍ଯ୍ୟ ନ ଲଭୁଣୁ ମୁଁ ତ ପ୍ରଘଟ ହୋଉଛୁ ।
ବିଗୃହଣ୍ଟ ଏହା ଖେଦଚିତ୍ତେ ପଛଘଞ୍ଚି ॥
କୃଷ୍ଣ ମନ ଧନ ଲୁଟିଆଇ ଲେଉଟଇ ।
ଗଙ୍ଗା କି ସାଗରେ ପଶି ଉଜାଣି ଟେକଇ ॥
ସାକ୍ଷୀ ରୂପ ଦୁହିଁ ମୋହେ ମଦନମୋହନ ।
ତରଳହୃଦୟ ମନ ନିଶ୍ଚଳଲୋଚନ ॥
ବିଗଦଧ ଧୀରୋଦାତ୍ତ ଲକ୍ଷଣ ବହିଲେ ।
ତଥାପି ଧଇର୍ଯ୍ୟ ଧରି ନ ପାରିଲେ ଭଲେ ॥

ଯାଚ୍ଛିକ୍ୟ ବାଧାରେ ଧାଇଁ ଧରି କୋଳ କଲେ
ପ୍ରାଣବନ୍ଧୁ କାହିଁକି ରେ ଯାଉଛୁ ବୋଇଲେ ॥
ଅଙ୍ଗେ ଅଙ୍ଗ ପରିରମ୍ଭ ଦୁହେଁ ପ୍ରେମେ ଭାସି ।
ଦଳିତ କଜ୍ଜଳ ହରିତାଳ ମିଶାମିଶି ॥
ପ୍ରମୋଦେ ପ୍ରମୋଦେ ସମର୍ପିତ ପ୍ରାଣେ ପ୍ରାଣେ ।
ଭୁଜେ ପରିବନ୍ଧ ମୁଖପଦ୍ମ ଗନ୍ଧଘ୍ରାଣେ ॥
ସେହି ମୁହିଁ ମୁହିଁ ସେହି ଦେହକୁ ପାଶୋରି ।
ରସେ ଢଳଢଳ ଅନୁରାଗ ଭାବ ପୂରି ॥
ବୋଲେ ବନେଶ୍ୱରୀ ଶୁଣ ପୁରୁଷଉତ୍ତମ ।
ନବବଧୂ ସମାଗମେ ଯଥୋଚିତ କର୍ମ ॥
ଲୋକଅପବାଦ ଗୁରୁଜନ ବାଦ ବିଘ୍ନ ।
ନ ପଡ଼ିବ ଭୋଗ୍ୟ କର ଜାଣି ଶୁଭ ଲଗ୍ନ ॥
ବୃନ୍ଦା ଉପଦେଶେ ହରି ପ୍ରିୟା କର ଧରି ।
ମାଧବୀ ମଣ୍ଡପ ବିଜେ ହେଲେ ସହଚରୀ ॥
ଢୁଳଢୁଳ ଦେଇ ପୁଷ୍ପ-ଆସନେ ବସାଇ ।
ମଙ୍ଗଳ ପଢ଼ନ୍ତି ପ୍ରେମଉତ୍କଣ୍ଠ ମିଶାଇ ॥
ଦ୍ୱିଜରାଜମୁଖୀ ସଖୀ ବରଣ ବେଭାରେ ।
ସଂକଳ୍ପ ଉଚ୍ଚରେ ସ୍ମରଯଜ୍ଞ ଆରମ୍ଭରେ ॥
ସ୍ୱସ୍ତି ସ୍ୱସ୍ତି ସ୍ୱସ୍ତି ତିନିବାର ଉଚ୍ଚାରିଲେ ।
ଗଙ୍ଗା ଆଦି ପୁଣ୍ୟନଦୀ ସିନ୍ଧୁ ସୁମରିଲେ ॥
ପୂର୍ଣ୍ଣକୁମ୍ଭ ସ୍ଥାପିଣ ବରୁଣ ପୂଜାବିଧି ।
ମନମଥ ମନୋରଥ ଯେଣେ ହେବ ସିଦ୍ଧି ॥
ଦୂର୍ବାକ୍ଷତ ପୁଷ୍ପ ଦେଇ ଆଳତି ବନ୍ଦାଇ ।
ଏକ ସଖୀ ଆନେରଙ୍କୁ ବଧାଇ ସଧାଇ ॥
ଲଳିତା ଲଳିତେ ସେ ବଡ଼ପୂଜାଲାଗି କରେ ।
ବିଶାଖା କର୍ପୂର ନାନା ଗନ୍ଧପାତ୍ର ଧରେ ॥
ସୁରଙ୍ଗା ପକାଇ ଖଟ ବସନ ସଂଯୋଗେ ।
ଚାମର ଚମ୍ପକଲତା ଢାଳଇ ସରାଗେ ॥
ରଙ୍ଗଦେବୀ ନାନା କଉତୁକ କଥା ଭଣି ।
ସୁଦେବୀ ସୁବାସ ପାଣି ରତ୍ନଝରି ସେନି ॥
ତୁଙ୍ଗବିଦ୍ୟା ତନ୍ତ୍ରଯନ୍ତ୍ର ବିବିଧବିଧାନେ ।
ଇନ୍ଦୁରେଖା ଦର୍ପଣ ଧରଣ ସନ୍ନିଧାନେ ॥
ଏହୁ ଅଷ୍ଟସଖୀଙ୍କର ମୂଳସେବା ଏହି ।
ଅବକାଶ ଅନୁମତେ ଯେତେବେଳେ ଯେହି ॥

ମଞ୍ଜରୀସମୂହ ଛନ୍ତି ନାନା ସେବା ଖଟି ।
କେତେହେଁ ବିସ୍ତାରି ତା କହିବା ଗୋଟି ଗୋଟି ॥
ଗାନ୍ଧର୍ବେ ଗାନ୍ଧର୍ବୀ ବିଭାଉତ୍ସବ ବଢ଼ାଇ ।
ନାନା ପୁଷ୍ପ ତୋଳି ଶିରେ ଗଭାକୁ ଚଢ଼ାଇ ॥
ପୁଷ୍ପଦୋଳା ପଲଙ୍କେ ବିଜେସେ ତହୁଁ କଲେ ।
ନବଘନ କୋଳେ ବିଦ୍ୟୁ ସ୍ଫୁରିତେ ରହିଲେ ॥
କିଶୋର କିଶୋରୀ ସୁଖେ ସଖୀ ପ୍ରମୋଦିତ ।
ମୂଳଜଳେ ଯେସନ୍ତେ ପୁଷ୍ପ ଲତା ପଲ୍ଲବିତ ॥
ଧୀରେ ଦୋଳ ପହଞ୍ଚାଇ ରଙ୍ଗେ ଗୀତ ଗାଇ ।
ଶୁଣି ବେନି ଜନ ମନ ଆନନ୍ଦିତ ହୋଇ ॥
ଦୋଳାରୁ ଓହ୍ଲାଇ ବନେ ପଶିଣ କ୍ରୀଡ଼ନ୍ତି ।
ନାନା ପୁଷ୍ପ ତୋଳି ଆଳୀ ଶିରେ ହାଉଡ଼ନ୍ତି ॥
ରମ୍ୟସ୍ଥାନ ଦେଖିଣ ବିଶ୍ରାମ କଲେ କ୍ଷଣେ ।
ସାରୀ ଶୁକ ପିକ ଚକ୍ରବାକ ଡାକ ଶୁଣେ ॥
ମୁଖପଦ୍ମ ଭ୍ରମେ ନେତ୍ର ଭ୍ରମର ଭ୍ରମନ୍ତି ।
ଏମନ୍ତ ଦେଖିଣ ବୃନ୍ଦା ଉତ୍କଣ୍ଠ କରନ୍ତି ॥
କାମରାଜ ଉପରେ ଏ ମଣ୍ଡଳ ବେଢ଼ାଇ ।
ବାଣ ଦେଇ ଓଗାଳଇ ଦେଖାଇ ବଢ଼ାଇ ॥
ଯଜ୍ଞ ଆରମ୍ଭରେ ତାର ହୋଇଛ ପରଜା ।
ତେଣୁକରି ଦେଖାଏ ସେ ରାଜାର ତରଜା ॥
ପ୍ରିୟାରସ ହରିବର୍ଗ ପାଇ ହେଲ ତୋଷ ।
ନାଗର ନାଗରୀ ଦୁହେଁ ଶୁଣି ହସ ହସ ॥
ଶ୍ରୀହସ୍ତେ କୁସୁମ ତୋଳି ଗୁନ୍ଥି ଗଭମାଳ ।
ଜାନୁରେ ବସାଇ ପ୍ରିୟା ମଦନଗୋପାଳ ॥
କବରୀ ସାଜିଆଇ ଗଭ ଯତନେ ମଣ୍ଡିଲେ ।
ମକର ଲିହନ୍ତେ କରକର୍ମେଣ ହୁଡ଼ିଲେ ॥
କୁଚେ ପତ୍ରାବଳୀ ଲିହିବାକୁ ବଡ଼ ମନ ।
ଧୈର୍ଯ୍ୟ ନ ବଳେ ଆଡ଼େ କରିବାକୁ ବସନ ॥
କୃପଣ ଧନରେ ଯେତେ ପ୍ରାୟେ ନିଜମାନଦଣ୍ଡ ।
ଟସକରି କୁଟିଳ କୃଷ୍ଣର ମତ ନହିଁ ॥
ଯୁବତୀସମୂହ ନାନାରସ ଭଙ୍ଗୀ ଜାଣି ।
ନେତ୍ର ପ୍ରାନ୍ତ ଚତ୍ର ବୃଦ୍ଧି ତହିଁ ଅଛି ମଣି ॥
ଗୁପତେଣ ନଖ ଅଗ୍ର କରେ ଗତାଗତି ।
କୁମ୍ଭସ୍ଥଳେ ଅଙ୍କୁଶ ଭେଦନ୍ତେ ଯେସନ୍ତେ ହସ୍ତୀ ॥

ତହୁଁ କେତେଦୂର ଯାଇ ଶ୍ରମ ଭୂଷି ଦେହେ ।
ଜଳକେଳି କରନ୍ତି ସେ କୁଣ୍ଡ ଅବଗାହେ ॥
ଝିନବାସ ଜଡ଼ିଣ ହଣଇ ଯଜ୍ଞବନ ।
ରହିଲେ ଆକଣ୍ଠେ ବୁଡ଼ି ଯୁବତୀଙ୍କଗଣ ॥
ବୋଲନ୍ତି ନାଗର ଏହା ନୁହଇ ଉଚିତ ।
ନାଭି ବଳ ସ୍ନାନକଲେ ଅଧର୍ମ ବହୁତ ॥
ଶୁଣି ପାଞ୍ଚ ସାତ ନାରୀ ହୋଇ ଏକମେଳ ।
କୃଷ୍ଣ ନୟନକୁ ଜଳ ମାରି କରି ଗୁଳ ॥
ପଛମୁଖ ହୋଇ ହରି ଢାଙ୍କେ ନେତ୍ରେ ହସ୍ତ ।
ଶ୍ରସ୍ତ ହୋଇ କୂଳେ ଉଠି ଯୁବତୀ ସମସ୍ତ ॥
ଚନ୍ଦନ ପିଚକା ନଳୀ ଧରି କୃଷ୍ଣ କରେ ।
ମୃଦୁହାସ୍ୟେ ବାରେସ ମାରେ ଯଜ୍ଞବନ ପରେ ॥
ଲଜ୍ଜା ପ୍ରେମ ସହ କେହୁ କୃଷ୍ଣ ଆଲିଙ୍ଗନେ ।
ପରିରମ୍ଭ କରି କର ଆଚ୍ଛାଦେ ନୟନେ ॥
କେହୁ ସଙ୍କୁଚିତେ ରହି କେ ଅଙ୍ଗ ମୋଡ଼ଇ ।
କେବଣ ନାୟିକା ବାହୁ ଛନ୍ଦଣୀ ଯୋଡ଼ଇ ॥
କେହୁ ଅଙ୍ଗ ଢ଼ାଳି ରହେ କେ କରେ ବଞ୍ଚାଇ ।
କୁଚକୁମ୍ଭ ସଞ୍ଚି କୃଷ୍ଣ ଲୋଚନେ ଲୁଚଇ ॥
ଶତମୁଖୀ ପିଚକା ପଡ଼ନ୍ତେ ଘନ ଘନ ।
ଗଉର ଲାବଣ୍ୟ ତନୁ ନମତେ ବସନ ॥
ଆନନ୍ଦ ଉଦ୍ରେକ ହରି ଅଙ୍ଗଶୋଭା ଦେଖି ।
ଜାମ୍ବୁନଦ ପଙ୍କେ ଖଞ୍ଜରୀଟ ଆଖି ଲାଖି ॥
କୃଷ୍ଣଙ୍କୁ ପ୍ରବଳ ଦେଖି ସୀମନ୍ତିନୀ ଯୂଥ ।
ପିଚକାରେ ଅଦୃଶ୍ୟ କଲେକ ନେତ୍ରପଥ ॥
ସୁଗନ୍ଧ ଚନ୍ଦନ ବୋଳି ଗୋର ଶରୀରେ ।
ଆଗହୁଁ ସଜ୍ଜିଣ ବୃନ୍ଦା ଅତି ଯତନରେ ॥
ଜଳଯୁଦ୍ଧ ହାରି ହରି ଚତୁ ଅବଲମ୍ବେ ।
ମୋହନ ମୁରଲୀ ଧରି ବଜାନ୍ତି ପଞ୍ଚମେ ॥
ଶୁଣିଣ କାମିନୀବୃନ୍ଦ ମତ୍ତ ବିଶୋରିଲେ ।
ଜଳଯନ୍ତ୍ର ପ୍ରହାର ସଂଯୋଗି ନ ପାରିଲେ ॥
କମ୍ପମାନ ହୋଇ ହସ୍ତୁଁ ଆୟୁଧ ପଡ଼ିଲେ ।
ଆପଣା ଇଚ୍ଛାରେ ଯାଇ କୃଷ୍ଣଙ୍କୁ ବେଢ଼ିଲେ ॥
ସଭି କରି ପଣ ଖେଳାଇଲେ ବେନି ଜନ ।
ହାରି ଜିଣେ ଧୁଡ଼ି କଲେ ଚମ୍ବୁ ଆଲିଙ୍ଗନ ॥

କେହୁ ହାରେ କେହୁ ଜଣେ ପଣାର ଆପୂତ ।
ହାର ଜଣା ଉଭୟରେ କୃଷ୍ଣର ସମ୍ମତ ॥
ଚତୁରୀ ଯୁବତୀ ଥାଇ ବୋଲନ୍ତି ଏ ପିତ ।
ଆମ୍ଭର ହାରକୁ ତୁମ୍ଭ ବଂଶୀ ଗୋଟି ଆଡ଼ ॥

ତୁମ୍ଭେ ଯେବେ ଜିଣିବ ଏ ଉରହାର ନେବ ।
ଆମ୍ଭର ଜିତାକୁ ତୁମ୍ଭ ବଂଶୀଗୋଟି ଦେବ ॥
ଏମନ୍ତ ସେ ଦ୍ୟୁତ ରଖି ପାତନ୍ତେଣି ଦାନ ।
ପଡ଼ିଲା ପଞ୍ଚତ ଜିତେ ଯୁବତୀରତନ ॥
ଲଳିତା ଉଚ୍ଛୁଡ଼ ବଂଶୀ ଘେନିଲେ ଛଡ଼ାଇ ।
ଏହି ବେଣୁଖଣ୍ଡି କୁଳବତୀଙ୍କି ବୁଡ଼ାଇ ॥
ଆଉ କିସ ଏ ପିଡ଼କୁ ରଖ ଦାମୋଦର ।
ଆମ୍ଭ କୁଚଶମ୍ଭୁକୁ ତୁମ୍ଭର ମୋତିହାର ॥
ସମାନ ନୋହିଲେ ଅଙ୍ଗ ଭୂଷଣି ଯେ ନେବ ।
ହାରିଲେ ତୁମ୍ଭ ଇଚ୍ଛାରେ ମୋତି ଯାଚି ଦେବ ॥

ଦ୍ୟୁତ ରଖି ତୋଡ଼ କରି ପାତନ୍ତେ ସେ ବେନି ।
ଡାକନ୍ତି ସେ ଦଶ ଚଉଦ ଯେ ଗୁରି ତିନି ॥
କେହୁ ଡାକେ ଦୁଗା ଘୁରି ଦୁତିଆ ପଞ୍ଚତ ।
କେହୁ ଡାକେ ବାମଣ୍ଡା କେ ଡାକେ ବିଦ୍ୟୁବନ୍ତୀ ॥
ଏକା କୃଷ୍ଣ ସକଳେ ସପକ୍ଷ ଜେମା ହୋଇ ।
ଘୁରି ଘୁରି ଆଠ ପାଞ୍ଚ ଜିଣେ ଜେମାଦେଇ ॥
ଦେଖିଣ ବିଶାଖା କଣ୍ଠୁ ନେଲେ ହାର କାଢ଼ି ।
ସୁଚିତ୍ରା ଘେନିଲେ ଯେ କୁଣ୍ଡଳଯୋଡ଼ ଫେଡ଼ି ॥
ଚମ୍ପକଲତା ଯେ କରୁ କଙ୍କଣ କାଢ଼ିଲେ ।
ରଙ୍ଗଦେବୀ କଟିରୁ ଯେ କିଙ୍କିଣି ଫେଡ଼ିଲେ ॥
ସୁଦେବୀ ଚରଣୁ ଯେ ନୂପୁର ଯୋଡ଼ ଘେନେ ।
ତୁଙ୍ଗବିଦ୍ୟା ଅଙ୍ଗୁଳି ମୁଦ୍ରିକା ସଯତନେ ॥

ଶଶିରେଖା ନାସା ଗଜମୋତିକି ଘୋଟଇ ।
ଏହି ସିନା ଆମ୍ଭ ସର୍ବ ମନକୁ ଧାଟଇ ॥
ରହ ରହ ପ୍ରାଣସଖୀ ରାଧା ସେ ଡାକନ୍ତି ।
ପ୍ରାଣନାଥ ମୋହର ଯେ ଅଲାଗି ଦିଶନ୍ତି ॥

ଯେତେ କେହ୍ନେ ବୋଲେ କର୍ଣ୍ଣକୁଣ୍ଡଳ ନେବାକୁ ।
ହାତ କେହ୍ନେ ଗଲା ଗଳା ମୁକୁତାମାଳାକୁ ॥

କଙ୍କଣ କିଙ୍କିଣୀ ସଖି କେମନ୍ତେ ଯେ ଫେ଼ଡ଼ି ।
ଏତେବେଳେ ସଖି ଟିକେ ଦୟାହିଁ ନ ମ ଡ଼ି ॥
ମଞ୍ଜୁଳ ମଞ୍ଜୀର ଯୋଡ଼ ନାହିଁ ତ ପଦରେ ।
ଅଙ୍ଗ ଆଭରଣ ଶାନ୍ତ ବିଚ୍ଛେଦ ଖେଦରେ ॥

କେତେ ଅପମାନ କର ପ୍ରାଣଧନ ନାଥେ ।
ନ ପାରେ ଅବସ୍ଥା ଏତେ ଦେଖି ନେତ୍ରପ ॥
ତୁମ୍ଭର କରଣି ଏବେ ଅଙ୍ଗେ ଆଏ ଖଞ୍ଜି ।
ତେବେ ସେ ହୋଇବ ମୋର ନେତ୍ରର ତୃ ॥

ବୋଲନ୍ତି ସଜଣୀ ରାଧେ କୃଷ୍ଣର କି ଦୋଷ ।
ବଂଶୀ ସଙ୍ଗେ ମିଶି ଏ କରନ୍ତି ଧୈର୍ଯ୍ୟ ଧ୍ୱଂସ ॥
ତୁମ୍ଭେ ଲଗାହୁଅ ଏବେ କୃଷ୍ଣ ସଙ୍ଗେ ଥିବ ।
ଆମ୍ଭର ହୋଇଣ ସେହୁ ବିବାଦ ନୋହିବ ॥

ଏହା ଭଣି ମଣ୍ଡନ କରିଲେ ସଯତନେ ।
ବସିଲେ ସୁପକ୍ୱଫଳ ମିଷ୍ଟାନ୍ନ ଭୋଜନେ ॥
ସ୍ୱାଦୁଫଳ ଯତନେ ଅଣାଇ ବନେଶ୍ୱରୀ ।
ସଖୀ ଆଣିଥିଲେ ଯେ ମିଷ୍ଟାନ୍ନ ନିର୍ମ କରି ॥

ଏକାସନେ ହରି ରାଧା ଭୋଜନ କରନ୍ତି ।
ଲଜ୍ଜା ତେଜି ଅଧର ଅମୃତେ ଲୋଭମତି ॥
ସଖୀଗଣ ଅବଶେଷ ଭୁଞ୍ଜି ତୋଷ ହୋଇ ।
ଆଚମନ ସାରି ସଖୀ ତାମ୍ବୁଳ ଭୁଞ୍ଜାଇ ॥

ନିଭୃତ ନିକୁଞ୍ଜ ଶେଯ ଯତନ ହୋଇଛି ।
ପୁଷ୍ପଗବାକ୍ଷରେ ଧୀରସମୀର ବହୁଛି ॥
ପୁଷ୍ପଚନ୍ଦ୍ରାତପ ପୁଷ୍ପଗର୍ଭଦଳ ଶେଯ ।
ଘ୍ରାଣି ସିଞ୍ଚି ସମତୁଲ ଶ୍ରୀକର୍ପୂର ରଜ ॥
ତହିଁ ବିଜେ କରାଇଲେ କିଶୋର କିଶୋରୀ ।
କୁସୁମ କବାଟ ପଡ଼ ସଖୀ ଅପସରି ॥

ମନୋଭବେ ଗୋଚର ନୁହଇ ଯେଉଁ ରସ ।
ଅକଥନ ଲୋକରେ ସେ ନୁହଇ ପ୍ରକାଶ ॥
ଚିରକାଳ ବିରହର ତୃଷା ପୂର୍ଣ୍ଣ ନୁହେ ।
ଅଷ୍ଟଦିଗ କୁଞ୍ଜେ ସଖୀ ଏହିଭାବେ ରହେ ॥

ପୁଷ୍ପରସ ମଧୁପାନେ ହୋଇଣ ପ୍ରମତ୍ତ ।
ଖେଳନ୍ତି ଖେଳ ଅତିଶୟ ଲୀଳାର ଉଦ୍ଧତ ॥
ବୃନ୍ଦାର ଆଦେଶେ ବୃକ୍ଷେ ସାରିକା ଭାଷଇ ।
ସୂର୍ଯ୍ୟପୂଜା ବିଳମ୍ବରୁ ଜଟିଳା ଆସଇ ॥
ଶୁଣି ସଙ୍କୁଚିତେଣ ବାହାର ବେନିଜନ ।
ସୂର୍ଯ୍ୟପୂଜା ଛଳରେ ଚଞ୍ଚଳ ରାଈ ମନ ॥
ବିଷାଦେ ବିଚ୍ଛେଦ ଚିନ୍ତି ଅର୍କସ୍ଥଳେ ଚଳେ ।
ସଖୀ ନେବ ଘେନ ହରି ବତ୍ସବାଳ ମେଳେ ॥
ବଧୂର ବିଳମ୍ବ ଦେଖି ଜଟିଳା ଆସନ୍ତେ ।
ବିନ୍ଦୁମତି କଥା ଭାଷେ ମିଳି ତା ଅଗ୍ରତେ ॥
ବୋଲନ୍ତି ମୁଁ ଥିଲି ତୋର ବଧୂ ସନ୍ନିଧାନେ ।
ଆଜି ପୂଜା ପୂର୍ଣ୍ଣ ତଥି ଅନେକ ବିଧାନେ ॥
ପ୍ରସନ୍ନ ପାଇଲେ ବର ବାଞ୍ଛାସିଦ୍ଧି ଫଳ ।
ବଧୂ ଯୋଗେ ଉଜ୍ଜ୍ୱଳ ହୋଇଲା ତୁମ୍ଭ କୁଳ ॥
ପତିବ୍ରତା ସାଧ୍ୱୀ ସେ ସତୀଶିରୋମଣି ।
ମଧୁର ବଚନେ ସମସ୍ତଙ୍କ ମନ କିଣି ॥
ଧନ୍ୟ ତୁମ୍ଭ ପୁଣ୍ୟରେ ପାଇଛ କୁଳବଧୂ
ଧନ୍ୟ ଏ ଗୋକୁଳ ଧନ୍ୟ ଅଭିମନ୍ୟୁ ସାଧୁ ॥
ବୋଲଇ ଜଟିଳା ତୁମ୍ଭମାନଙ୍କର ଧର୍ମେ ।
କଲ୍ୟାଣ ଯେ କରୁଥାଅ ଏହି ଶୁଭ କର୍ମେ ॥
ବିନ୍ଦୁମତି କଥାରବେ ମୋହିତ ହୋଇଲା ।
ଆନନ୍ଦେ ବଧାଇ ବାସ ଅଳଙ୍କାର ଦେଲା ॥
ସୂର୍ଯ୍ୟ ପୂଜା ବଢ଼ାଇ ପ୍ରବେଶ ଘରେ ରାଈ ।
ପୁରଜନେ ଆନନ୍ଦ କମଳ ମୁଖ ଚାହିଁ ॥
ସାୟଂ ପ୍ରବେଶିଲା ହରି ବତ୍ସ ଲେଉଟାଇ ।
ବେନିଜନ ମନ ନେଇ ନେଲେ ପାଲଟାଇ ॥
ସ୍ନାନ ଯେ ସୁବେଶ ହୋଇ ମିଷ୍ଟାନ୍ନ ଭୋଜନେ ।
ଦୋହନ ବଢ଼ାଇ ସଭା ଘେନି ପ୍ରିୟଜନେ ॥
ଘଟ ଶିରେ ବହି ଯେତେହେ ଘଟଆଳ ନାଚେ ।
ନାନା ଗୀତ ଗାଉ ଶତ୍ରୁ ଥାଇ ଯେତେହେ ଘଟେ ॥
ସେହି ରୂପେ ମନୋବୁଦ୍ଧି ଲୟ ରାଧାଠାରେ ।
ଲୌକିକ ମତରେ କରେ ନିତ୍ୟସମାଚାରେ ॥
ପଲଙ୍କେ ପହୁଡ଼ି ସେହି ରସରେ ଭାଷଇ ।
ନିଦ୍ରା ଗଲେ ସ୍ୱପନରେ ସେହି ସେ ଦିଶଇ ॥

ଏଥି ଶତଗୁଣେ ରାଧା କାନ୍ତବିଚ୍ଛେଦରେ ।
ନିଶି ଶେଷେ ବନାଗମ ମନପ୍ରମୋଦରେ ॥
ସ୍ନାନ ସୁବେଶ ହୋଇଣ ନୃପତିଦୁଲ୍ଲଣୀ ।
ଦାସୀ ପରସ୍ପରେ ବେଳ ପୁଚ୍ଛେ ପୁଣି ପୁଣି ॥
ଏମନ୍ତେଣ ନିତି ହରି ବଢ଼ାଇ ବାହାର ।
ବଳଦେବ ସହିତେଣ କାନନେ ବିହାର ॥
ଏମନ୍ତେଣ ଗୋପାଳେ ଗୋଧନ ଗୋବର୍ଦ୍ଧନେ ।
ଚରନ୍ତି ଦେଖିଲେ ବତ୍ସବାଳ ସନ୍ନିଧାନେ ॥
ହେମାରବ କରି ଗାଈ ଧାଇଁଣ ଆଇଲେ ।
ସ୍ତନଭରା ବତ୍ସଙ୍କୁ ଲେହିଣ ପିଆଇଲେ ॥
ଗୋପାଳେ ପୁତ୍ରଙ୍କୁ ଧରି ଦିଅନ୍ତି ଚୁମ୍ବନ ।
କାନ୍ଧେ କାନ୍ଧେ ଗଲେ କେହୁ କରେ ଆଲିଙ୍ଗନ ॥
ଅତିଶୟ ସ୍ନେହ ଦେଖି ବିଚାରନ୍ତି ରାମ ।
ଦିଶନ୍ତି ସକଳେ ଏ କୃଷ୍ଣ ଅନୁପମ ॥
ନିଜ ବତ୍ସବାଳ ଅନ୍ୟନ ଛନ୍ତି କାହିଁ ।
କୃଷ୍ଣଙ୍କୁ ପୁଚ୍ଛନ୍ତି ସେ ସଂଶୟ ମନେ ବହି ॥
ପ୍ରଣାମ କରିଣ କରଯୋଡ଼ି କହେ ହରି ।
ବାଳକ ସଙ୍ଗରେ ମୁଁ ଭୋଜନଲୀଳା କରି ॥
ଭ୍ରମ ହୋଇ ବ୍ରହ୍ମା ଗର୍ବ ବହି ନ ଜାଣିଲା ।
ମୋତେ ମାୟା କରି ବତ୍ସବାଳ ହରିନେଲା ॥
ଏ ଗୋପନଗରେ ଚିନ୍ତା ନୋହିବା ନିମିତ୍ତ ।
ଉପାୟ କରିଣ ବତ୍ସବାଳ କଲି ଜାତ ॥
ଶୁଣି ରାମ ତୋଷେ ହରି ଆଲିଙ୍ଗନ କଲେ ।
ଆମ୍ଭର ମର୍ଯ୍ୟାଦା ଭଲ ରଖିଲୁ ବୋଇଲେ ॥
ଏମନ୍ତେଣ ବରଷ ସମ୍ପୂର୍ଣ୍ଣେ ବେଦବର ।
ଗର୍ବ ମନେ ପୁଣି ମିଳେ ଶ୍ରୀବୃନ୍ଦାବନର ॥
ବତ୍ସବାଳ ହରି କମଣ୍ଡଳରେ ରଖିଲି ।
କେମନ୍ତ ଆକୁଳ ହେଉଥିବେ ନ ଦେଖିଲି ॥
ଏମନ୍ତ ବିଚାରି ହଂସ ଆରୋହି ବିଜୟ ।
ଦେଖିଲେ ସେ ବୃନ୍ଦାବନ ସର୍ବ ବ୍ରହ୍ମମୟ ॥
ତରୁଲତା ମୂର୍ତ୍ତିମନ୍ତ ଯଜ୍ଞ ଆରମ୍ଭରେ ।
ପତ୍ର ପୁଷ୍ପ ଫଳ ମଧୁ ଇନ୍ଧନ ସମ୍ଭାରେ ॥
ଉଦରେ ଅନଳ ସ୍ଥାପି ସମିଧ କ୍ଷେପନ୍ତି ।
ଶୁକ ପିକ ଆଦି ଦ୍ୱିଜ ନିଗମ ପଢ଼ନ୍ତି ॥

ମୃଗଗଣ ବ୍ରହ୍ମସ୍ତବ କରନ୍ତି ବହୁର ।
ସର୍ବ ଦେବ ହବର୍ଗ ଲୋଭେ ପରସ୍ପର ॥
ଘନମାଳା ଯେମନ୍ତ ଇନ୍ଦ୍ର ଅମୃତ ବରଷେ ।
ବନସ୍ଥଳ ଔଷଧୀଶ ଆହ୍ଲାଦ ରସେ ॥
ଅଷ୍ଟନିଧି ଯେମନ୍ତ ସେ କୁବେର ରହଇ ।
ମନ୍ଦଗନ୍ଧ ଶୀତଳେ ସମୀର ବହଇ ॥
ଯମୁନା ସଙ୍ଗରେ ସେବା କରଇ ବରୁଣ ।
କରପଦ ଯୋଡ଼ି ଦୂରେ ଅଛି ଯମଗଣ ॥
ଏମନ୍ତ ସକଳ ଦେବେ ବ୍ରହ୍ମସ୍ତୁତି ଆଦି ।
ବ୍ରହ୍ମାସ୍ତବ ଶୁଣିବାରେ ହୋଇ ଅନୁବାଦୀ ॥
ଲକ୍ଷ ଲକ୍ଷ କାମଧେନୁ ସର୍ବବାଞ୍ଛା ଦ୍ରୁମେ ।
ସର୍ବଫଳ ସିଦ୍ଧି ବ୍ରହ୍ମା ଦେଖି ଚିତ୍ତ ଭ୍ରମେ ॥
ମଣିମୟ ସିଂହାସନେ କମଳନୟନ ।
କର ଯୋଡ଼ି ସ୍ତୁତି କରେ ସହସ୍ରଲୋଚନ ।
ଦେଖି ଭୟେ ଜମମାନେ ଚାହ୍ନି ମୋହ ଗଲା ।
କ୍ଷଣକରେ ଚେତା ପାଇ ପୁଣିହିଁ ଚାହିଁଲା ॥
ଦେଖଇ ପଶୁପବେଶ ନବଘନ ବର୍ଣ୍ଣ ।
କାଖେ ବେଣୁ ବେତ ବାମ କରେ କଚ୍ଛ ଅନ୍ନ ॥
ଦକ୍ଷିଣ କରରେ ଗୁଣ୍ଡି କବଳ ତୁଣ୍ଡରେ ।
ଏକା ହୋଇ ବଚ୍ଛା ଲୋଡ଼େ ଗହନମଣ୍ଡଳେ ॥
ଚରଣେ ପଡ଼ଇ ବହ୍ମ ଭୟେ ଥରହର ।
ସ୍ତୁତି ବଖାଣଇ ଉଭା ହୋଇ ଶିରେ କର ॥
ନମସ୍ତେ ଗୋକୁଳନନ୍ଦ ଅଖିଳ ଜୀବନ ।
ଶରଣରକ୍ଷଣ ନାଥ ମହିମା ଗହନ ॥
କର୍ମଯୋଗେ ଫଳଲୋଭେ ନାନା କର୍ମ କରେ ।
ସ୍ୱର୍ଗଫଳ ଭୁଞ୍ଜି ପୁଣ ପଡ଼ନ୍ତି ସଂସାରେ ॥
ଆତ୍ମଜ୍ଞାନ ଶ୍ରମମାତ୍ର ତୁଷ କୁଟିବାରେ ।
ଏ ସାଗରେ ତୋର ପଦ ଲଭନ୍ତି ନ ପାରେ ॥
ଯାହାଙ୍କୁ ତୋହର ଚିତ୍ତ ସୁଦୟା ହୁଅଇ ।
ତାର ତୋର ପାଦପଦ୍ମେ ଭକ୍ତି ଉପୁଜଇ ॥
ଏତେ ଅଧିକାର ମୋତେ ଦେଇଅଛ ପ୍ରଭୁ ।
ତୋତେ ନ ଚିହ୍ନିଲି ମୁହିଁ ଜାତ ହୋଇ ଗର୍ବ ॥
ଆନ ଜନ କାହିଁ ତୋର ପାଇବେ ଗୋଚର ।
ଗୁଣ କର୍ମ ମହିମା ନିଗମେ ଅଗୋଚର ॥

ଏ ଗୋପୀ ଗୋପାଳ ଭାଗ୍ୟ କେ ଅବା କହିବ ।
ଏହି ଅପରାଧେ ମୁଁ ପାଇଲି ପରାଭବ ॥

ଶ୍ଳୋକଃ

ଆସାମହୋ ଚରଣରେଣୁ ଜୁଷା ମହଂ ସ୍ୟାଂ ।
ବୃନ୍ଦାବନେ କିମପି ଗୁଳ୍ମଲତୌଷଧୀନାଂ ॥
ଯା ଦୁସ୍ତ୍ୟଜଂ ସ୍ୱଜନମାର୍ଯ୍ୟପଥଞ୍ଚ ହିତ୍ୱା ।
ଭେଜୁର୍ମୁକୁନ୍ଦପଦବୀ ଶ୍ରୁତିଭିର୍ବିମୃଗ୍ୟାଂ ॥

ଆଶା ମୋର ଏହି ପଦରେଣୁ ଥିବ ବହି ।
ବୃନ୍ଦାବନେ ତରୁଲତା ଗୁଳ୍ମହୋଇ ରହି ॥
ଏହିମତେ ବିନୟେ ଅନେକ ସ୍ତବ କଲା ।
ଗୋବଚ୍ଛା ବାଳକ ବେଗେ ଆଣି ସମର୍ପିଲା ॥
ଚରଣରେ ପଡ଼ିଣ ବୋଇଲ ବେଦବର ।
ଶ୍ରୀକରେ ତୋଳିଣ ହରି କହନ୍ତି ମଧୁର ॥
ମୋର ଦୁଷ୍ଟଆତ୍ମା ତୁ କପାଇଁ ଶୋକ କରୁ ।
ସମୟକୁ ଜାଣି ସିନା ବଚ୍ଛାବାଳ ହରୁ ॥
ନୋହିଲେ ଗୁପତଲୀଳା ପ୍ରକଟ ହୁଅନ୍ତା ।
ତୁହି ସିନା କରୁ ସର୍ବ ସର୍ଜନାର ଚିନ୍ତା ॥
ନିଜପୁର ଯାଇଣ ଜଗତ ଚିନ୍ତା କର ।
ଆଜ୍ଞା ଶିରେ ଘେନିଣ ଗଲାକ ବେଦବର ॥
ଗତକାଳ ପୁଅଙ୍କୁ ଘେନିଣ ହରି ଗଲେ ।
ବତ୍ସ ଲୋଡ଼ି ପୁଣ ମିଳେ ଭୋଜନର ସ୍ଥଳେ ॥
ଦେଖି ପୁଏ ବୋଲୁଛନ୍ତି ଭଲ ଭଲ ହରି ।
ଲୋଡ଼ି ଯାଇ କେତେବେଗେ ଆଣିଲୁ ବାଛୁରି ॥
ଆମ୍ଭେ ଜଗି ବସିଛୁଁ ତୁମ୍ଭେ ଏଠାରେ ବସ ।
ବାଳକ ମଧ୍ୟରେ ବସି ଭୁଞ୍ଜି ହେଲେ ତୋଷ ॥
ଏମନ୍ତେଣ ସାୟଂକାଳେ ବତ୍ସ ବାହୁଡ଼ାଇ ।
ଗୋପେ ମିଳେ ଅବାବଧ ପତାକା ଉଡ଼ାଇ ॥
ସ୍ନାନ ବେଶ ଦୋହନ ଭୋଜନ ସର୍ବ ଅନ୍ତେ ।
ରଜନୀରେ ପଲଙ୍କେ ପହୁଡ଼ି ନିଦ୍ରାଗତେ ॥
ବୃଷଭାନୁ ନନ୍ଦିନୀର ଭାବ ହୃଦେ ଗୁଣି ।
ସେ ରସେ ବିଳସେ ଆନ ରସହିଁ ନ ଗଣି ॥
ସେହି ସଖୀଗଣ ସେବା ଘେନଇ ମୁଁ ମନେ ।
ଦାଶରଥି ଦାସ ସେବେ ପଦ ସମ୍ବାହନେ ॥
ସମ୍ପୂର୍ଣ୍ଣ ଚତୁର୍ଥ ବୋଲ ସହସ୍ର ପଦରେ ।
ଗୋପୀନାଥ ଦେବ ତନଅଙ୍କ ଭଦ୍ରବରେ ॥

ରାଧାକୃଷ୍ଣ ନବ ଅନୁରାଗ ପ୍ରେମସାର ।
ଜୀବରେ ମରମଗତ ଆନେ ନାହିଁ ପାର ॥
ତେଣୁ ଗର୍ଭ ଆଶ୍ରିତରେ ଗତି ମୋର ମନେ ।
ଉପାସନା ସଜାତୀୟା ନୈଷ୍ଠିକ ଭଜନେ ॥
ପ୍ରଭୁ କୃପା କରେ ହୃଦେ ମୁଁ କରେ ଲେଖନ ।
ସାଧୁଜନମାନେ ଏଥି ଦୋଷକୁ ନ ଘେନ ॥
ଶ୍ରୀକଣ୍ଠ ଦାସ ଗୋସାଇଁ ଚରଣ ଆଶ୍ରୟେ ।
ଦାଶରଥି ଦାସର ଏ ସ୍ଫୁରିତ ହୃଦୟେ ॥

ଚତୁର୍ଥବୋଲି ସମାପ୍ତ

ଶ୍ରୀରାଧାଗୋବିନ୍ଦ ଶରଣମ୍



## ପଞ୍ଚମ ବୋଲି

ରାଗ—ଖେମଟା ବୃତ୍ତି

ଜୟ ଗୋକୁଳ ସୁନ୍ଦରନନ୍ଦ ନନ୍ଦନନ୍ଦନ ।
ଜୟ ରାଧା ପ୍ରାଣବନ୍ଧୁ ଜଗଜନବନ୍ଦନ ॥
ଜୟ ମେଘଶ୍ୟାମଉଜ୍ଜଳ ମୃଗମଦତିଳକ ।
ଜୟ ବୃନ୍ଦାବନଚନ୍ଦ୍ର ନେତ୍ରସୁଖଦାୟକ ॥
ନବଜଳଦ ନୀଳମଣି ମୃଦୁମଞ୍ଜୁଳ ତନୁ ।
କୁଳବତୀ ବ୍ରତ ହନ୍ତା କାମ ଜନମ ମନୁ ॥
ଶୃଙ୍ଗାର ରସର ସାଗରବର ଧଇର୍ଯ୍ୟ ନମ୍ର ।
ଭକ୍ତାନନ୍ଦବତ୍ସଳ ଯେ ବାଞ୍ଛାକଳ୍ପତରୁ ॥
ବେଣୁବାଦନେ ମୋହନ ଭେଦି ଗୋକୁଳନାରୀ ।
ନଟବର ବେଶ ଛବି ଗୋବର୍ଦ୍ଧନଧାରୀ ॥
ନାଶି ପୂତନା ଶକଟା ତୃଣା ବତ୍ସା ବକାକୁ ।
ଅଘା ଧ୍ୱଂସି ଉଦ୍ଧରିଲ ଗର୍ଭ ବିପ୍ରବାଳଙ୍କୁ ॥
ରାଧା ଚନ୍ଦ୍ରାବଳୀ ଆଦି ଗୋପବାଳୀ ବଳମୀ ।
ବତ୍ସବାଳ ଜାତ କରି ଧାତା ଗର୍ବକୁ ମର୍ଦ୍ଦି ॥
ଗୋପୀ ଗୋପାଳ ଆନନ୍ଦ କନ୍ଦ ସୁଖସାଧନ ।
ଶ୍ୟାମରତନ ଜୀବନଧନ ରୂପ ମଦନ ।
ଖେଳେ ତପନତନୟା ତୀରେ ଗୋପାଳ ମେଳେ ।
ବେନି ସହୋଦର ଚିତ୍ତ ବୋଲି ଦାନବଦଳେ ॥
ଯନ୍ତୁ ଚରଣକମଳେ ମଧୁ ବିରହ ଖଣ୍ଡେ ।
ରେଣୁ ଉକୁଟି ଶନିତ ଭକ୍ତ ହୃଦୟ ମଣ୍ଡେ ॥
ଘଞ୍ଚ ସୁସଞ୍ଚ ଅଙ୍ଗୁଳି ମଣି ଚମ୍ପା ବିଧାନେ ।
ଶାନ୍ତ ଆଦି ପଞ୍ଚରସ ସ୍ୱଷ୍ଟି ଅନୁସନ୍ଧାନେ ॥
ନଭ ଆଦି ପଞ୍ଚଭୂତଗଣ ପରେ ପରେଣ ।
ରହେ ପୃଥକ ଅଙ୍ଗୁଳି ଶବ୍ଦ ଅନୁକ୍ରମେଣ ॥
ରେଖାଙ୍କୁଶ ବଜ୍ରଧ୍ୱଜ ଚକ୍ର ପଦ୍ମ ସ୍ୱସ୍ତିକ ।
ଅଷ୍ଟକୋଣ ଏବ ନବଚିହ୍ନ ଦକ୍ଷ ପଦକ ॥
ବାମେ ବିନ୍ଦୁ ତ୍ରିକୋଣ ଧନୁ ଅମ୍ବର ମଚ୍ଛ ।
ଅଙ୍ଗ ଅର୍ଦ୍ଧଚନ୍ଦ୍ର ମନୁ ପଦଘଟ ପ୍ରତ୍ୟକ୍ଷ ॥
ଅଣ୍ଡ ହରଷଣ ହରଣ ନବ ନବ ଶବ୍ଦରେ ।
ଶୋଭା କମନୀୟ ମୁକୁଟ ଏ ଧରଣୀ ଶିରେ ॥
ପାଦପଦ୍ମ ମକରନ୍ଦ ସୁଗନ୍ଧରେ ବାସଇ ।
ଦାସ ମାନସ ମଧୁପ ମଧୁପାନେ ରସଇ ॥
ବାଳ ଅରୁଣ ତରୁଣ ପଦ୍ମପାଦ ରଙ୍ଗିମା ।
ବନ୍ଧୁ ଆହ୍ଲାଦେ ଶୀତକର ମୁଖଚନ୍ଦ୍ରମା ॥
କ୍ୱଣ କ୍ୱଣିତ ନୂପୁର କ୍ଷୁଦ୍ର ଘାଘୁଡ଼ି ସାରେ ।
ଉଦେ ଉତ୍ତରଙ୍ଗ ନାଗର ଏ ବସ୍ତୁ ପ୍ରଦରେ ॥
ଦେବ ଋଷି ଆଦି ଏନ୍ତୁ ପଦ ଆଶ୍ରେ ଉଦ୍ଧତ ।
ଅତି ଦୁର୍ଲ୍ଲଭ ଜାଣି ମୁଁ ହେଲି ଶରଣାଗତ ॥
ସାଧୁ ଜନଙ୍କର କୃପାରେ କରଇ ପ୍ରକାଶ ।
ବ୍ରଜବିହାର ବୋଲି ପଞ୍ଚମ ପରମ ରସ ॥
ପଞ୍ଚଦଶାକ୍ଷରେ ଛନ୍ଦ ଅତି ଲଳିତ ଭାବ ।
ହରି ହୃଦୟରେ କରନ୍ତୁ ମୋର ଏ ଅସମ୍ଭବ ॥
ତାଳବନରେ ଧେନୁକା ଧ୍ୱଂସିଲେ ବଳଦେବ ।
ବାମେ ଦେନ ଅଧିକାର ସଖା ଧର୍ମରେ ଭାବ ॥

ବେନି ବରଷରେ ବୃନ୍ଦା ଉପଦେଶ ବଚନ ।
ନିମିଷକେ ତ କୁଞ୍ଜରେ ରାଧାକୃଷ୍ଣ ମିଳନ ॥
ସଖୀ ସଙ୍ଗେ ରାସ ନାନାରଙ୍ଗେ ମକରଧ୍ୱଜ ।
ଫୁଲକୋଦଣ୍ଡ କାଣ୍ଡ କଳିତ ଲଳିତ ରାଜେ ॥
କାମ ଗଞ୍ଜିଣି କାମିନୀକୁଳ ଧଇର୍ଯ୍ୟ ଧ୍ୱଂସି ।
କୁଞ୍ଜେ କୁଞ୍ଜେ ରତିରଙ୍ଗ ସଖୀ ସଙ୍ଗେ ବିଳସି ॥
ବନେ ବନେ ବୁଲି ଏକ ଆରେ ଉପମା ତୁଳି ।
ବୃଷଭାନୁ ଜେମା ସମାସ୍ୟାକୁ ନ ପାରେ ବଳି ॥
ଉପଭୋଗ ସଂଯୋଗରେ ବୃନ୍ଦା ସେବେ ଚରଣେ ।
ମଧୁପାନେ ମତ୍ତ ହୋଇ ରତି ସୁରତରଣେ ॥
ପ୍ରାତଃକାଳେ ବ୍ରଜେଶ୍ୱରୀ କୁନ୍ଦଲତାକୁ ପେଷି ।
ଜଟିଳାକୁ କହି ରାଜ ପୁରେ ଘେନାଇ ଆସି ॥
କୃଷ୍ଣ ନିମିତ୍ତ ଅତି ଯତନେ ପାକ ସମ୍ପାଦି ।
ବଳବନ୍ତ ହେବେ ହରି ଦୁଷ୍ଟ ଦାନବ ଛେଦି ॥
ଏହି ସବୁ ଅନୁକ୍ରମେ ଗୀତ ହେବ ବିସ୍ତାର ।
ରାଧାକାନ୍ତ ଅପମାନରୁ କରିବେ ନିସ୍ତାର ॥
ନଳକୁବର ନାରଦେ ପୁଛେ ବନ୍ଦି ପୟର ।
କହ ହେ ମୁନି ରାଧାଗୋବିନ୍ଦଙ୍କ ସମାଚାର ॥
ଏହି ଅତି ଅମିୟଚରିତ ଶ୍ରବଣେ ପିଏ ।
ତୁମ୍ଭ ବିନୁ ଏ ଗୁପତ ଲୀଳା କହିବ କିଏ ॥
ଏଥି ଉତ୍ତାରେ କେବଣ କୃତ୍ୟ କଲେ ଶ୍ରୀହରି ।
କହ ବୋଲି ମୁନି ପାଦଧୂଳି ଶିରରେ ବୋଳି ॥
ଗଦଗଦରେ ମୁନିବର ପୁଲକିତ ହୋଇ ।
ସ୍ୱେଦ ସ୍ତମ୍ଭ ଦମ୍ଭ ଆଦି ହରି ଭାବକୁ ବହି ॥
ସାଧୁ ମହିମା ଶ୍ରୁତିରେ ଶୁଣି ପଚୁରେ ଯାହା ।
ତୋର ଭାବେ ହରି ହୃଦେ ମୋର ପ୍ରକାଶେ ତାହା ॥
ପୂର୍ବେ ଲଳିତାଙ୍କୁ ପ୍ରସନ୍ନ କରାଇ ପଚାରି ।
ସେହୁ ଯାହା କହିଥିଲେ ତା କହିବି ବିସ୍ତାରି ॥
ଏକ ଦିନକରେ ବଳରାମ ସଙ୍ଗେ ବିହାର ।
ବନବିହାର ବେଶରେ ଘେନି ଅନ୍ନ ଆହାର ॥
କେହୁ କାଚ କାଛୁ କଟି ଘଣ୍ଟି ଘାଗୁଡ଼ି ସାରେ ।
ଶିରେ ଚଉତିନା ଭାଲେ ଫୋଟାଙ୍କ ଚନ୍ଦନଗାରେ ॥
କେହୁ ଜଙ୍ଘୀପିନ୍ଧି କାଛୁ ଜାନୁ ମୁକୁତା ଜାଲି ।
କେଉ କେଶି ହେମକିଙ୍କିଣୀକୁଳରେ ଝୁମ୍ପା ଓହଳ ॥

କେହୁ ସର୍ବାଙ୍ଗେ ଚନ୍ଦନ ଚୂଆ ଚିତ୍ର ବନାଇ ।
ରାମକୃଷ୍ଣ ପ୍ରଶଂସନ୍ତି କାହା ବେଶ ଅନାଇ ॥
କେହୁ ତ୍ରିଭଣ ପତନି ନେତ ଗଣ୍ଠି ହୋଇ ।
ଶିରେ ଟୋପି ଭାଲେ ଫୋଟି ଗୁରୁଚନ୍ଦନ ଶୋହି ॥
ହାର କେୟୂର କଙ୍କଣ ଘଣ୍ଟି ନୂପୁର ବାଜେ ।
ରଙ୍ଗମାଟି ଅଙ୍ଗେ ବୋଳି କେହୁ ପାଇକ ସାଜେ ॥
କେହୁ କସଟ କୁଣ୍ଡଳ ଶିରେ ମୟୂର ଚୂଳ ।
ଗୁଞ୍ଜାଗୁଞ୍ଜି ଗୁଞ୍ଜାହାର ମୁଣ୍ଡେ ମଣ୍ଡିତମାଳ ॥
କେହୁ ମୃଗାଙ୍କାସ୍ୟ ବେଶବାସ କାଛ କାଛିଣି ।
କାମକନକ ଅନେକ ମୋଡ଼ଝଣ୍ଡା ସାଜିଣି ॥
ଆଭରଣ ବାଙ୍କଚୂଳ ନାନା କୁସୁମ ଗନ୍ଧ ।
ବାହେ ବାହୁଟି କୁଣ୍ଡଳ ହାର କଙ୍କଣ ଶୋଭା ॥
ଖୁଦ୍ର କିଙ୍କିଣୀ ନୂପୁର ବାଜେ ତାଳ ମାନରେ ।
ରଙ୍ଗେ ନୃତ୍ୟ କରେ ରାମକୃଷ୍ଣ ଅବଧାନରେ ॥
କେହୁ ମାଲବେଶ କାଛୁ ଅଙ୍ଗେ ବିଭୂତି ମାଖି ।
ଏକ ଆରେ ପଞ୍ଝାପଞ୍ଝି ହରି କରାଇ ସାକ୍ଷୀ ॥
କେହୁ ଗାଡ଼ି ଘୋଡ଼ା ଚଢ଼ି ଧାବେ ରାଜତ ବେଶେ ।
କେହୁ ମାହୁନ୍ତ ଗୋପାଳ ଗଜ କନ୍ଧରେ ବସେ ॥
କେହୁ ଠେକା ପାଗ ଅଧାବଳି କେହୁ କାନେଟି ।
କେହୁ ବାସ ଗୁଡ଼ିଆଇ କେହୁ ବାଘମୁହାଁଟି ॥
କେହୁ ଭାଟ ବେଶ ଧରି ହସ୍ତେ ବାହୁ ତୋଳଇ ।
ରାମକୃଷ୍ଣ କବିତ୍ୱରେ କଏବାର କରଇ ॥
କେହୁ ଗୋରଚନା ତିତା କେହୁ କସ୍ତୁରୀ ଟିକା ।
କେହୁ ଅନ୍ନପୁଡ଼ା କାନ୍ଧେ ବାଡ଼ି ଲଗାଇ ଶିକା ॥
କେହୁ ସାତ ଟାଙ୍ଗ ଅନ୍ନ ଭାର କରି ବାହାର ।
କେହୁ ବୋଲେ ମହାବନେ ଆଜ ହେବ ବିହାର ॥
କେହୁ ଛତା ବାଡ଼ି କମ୍ବଳ ଧରି ବଛା ଅଡ଼ାଇ ।
ଶିଙ୍ଗା ବେଣୁ ଶୃଙ୍ଗ ବ୍ରଜବଧୂ ସଙ୍ଗେ ଗୋଡ଼ାଇ ॥
କେହୁ ଦେଖାଇ କହନ୍ତି ରାମକୃଷ୍ଣ ମହିମା ।
ନେତ୍ରଚକୋରୀ ନିସ୍ତୁଳ ଚୁମ୍ବି ମୁଖଚନ୍ଦ୍ରିମା ॥
ବନଗମନ ଉଦ୍ୟମେ ସର୍ବେ ଚଞ୍ଚଳ ମନେ ।
ନଦୀପାର ହୋଇ ସର୍ବେ ପଶି ମହାକାନନେ ॥
ମନ ମଙ୍ଗେ ପେଷି ବାହୁଡ଼ିଲେ ଗୋପସୁନ୍ଦରୀ ।
ବନେ ଚରାଇ ବାଛୁରୀ ପୁଏ ରଙ୍ଗେ ବିହରି ॥

କେହୁ କମଳା ନାରଙ୍ଗ ଡାଳ ନୁଆଇ ତୋଳ ।
ନାନା ସୁବାସ କୁସୁମ ତୋଳି ଗୁନ୍ଥନ୍ତି ମାଳୀ ॥
କେହୁ ମୟୂର ନାଟକୁ ଦେଖି ନାଟ ଆରମ୍ଭେ ।
ହେଠମାନେ ଥଣ୍ଟ ଚରଣ ଊର୍ଦ୍ଧ୍ୱେ ତୋଳି ସମ୍ଭ୍ରମେ ॥
କେହୁ ପିକ ଡାକ ଶୁଣି କୁହୁ କୁହୁ ଭାଷଇ ।
କେହୁ ଡାହୁକ ଧ୍ୱନିକି ଶୁଣି ଅନୁସରଇ ॥
କେହୁ ପକ୍ଷିକି ଉଡ଼ାଇ ଛାଡ଼ି ଗୋଡ଼ାଇ ଧାଏଁ ।
ମୃଗଗଣ ମଣ୍ଡଳରେ ମୃଗ ପରାଏ ହୁଏ ॥
କେହୁ ହଂସ ଚାଲି ଦେଖି ହଂସ ପରାଏ ଚାଲେ ।
ତରୁ ଡାଳେ ଡାଳେ ଉଡ଼ନ୍ତି କେ ବାନର ମେଳେ ॥
କେହୁ ନାନା ଜୀବ ଭାଷା ଭାଷି ଲତାରେ ପଶି ।
କେହୁ ପତ୍ରକାହାଳରେ ଗୀତ ଆଳାପେ ଘୋଷି ॥
କେହୁ ଶାର୍ଦ୍ଦୂଳ ଭଲ୍ଲୁକ ଧ୍ୱନି କରି ଡରାଇ ।
କେହୁ ବଛା ନାମେ ଗାଇ ମୃଦୁତୃଣ ଚରାଇ ॥
କେ କେ କେ ଡାକେ ତେଣ୍ଢୋଇ ଯୋଡ଼ି ଗଗନେ ଉଡ଼ି ।
ଆନନ୍ଦେ ରାମକୃଷ୍ଣ ସଙ୍ଗେ ଗୋପପୁତ୍ରେ ବିହରି ॥
କାହା ପାଦତଳୁ ଭୂମିବାସୀ ପତଙ୍ଗ ଉଡ଼େ ।
ଭୟେ ଚମକଣ ପଛେ ସଖା ଉପରେ ପଡ଼େ ॥
ଏକ ଆରେ ହସି ହାସେ କରତାଳକୁ ଦେଇ ।
କାହା ପଦଶ୍ରୁ ପଡ଼ନ୍ତେ ଶଶା ଗଲା ପଳାଇ ॥
ଶିରେ ଝଡ଼ ପଡ଼ୁଅଛି ନାଗେଶ୍ୱର ବକୁଳ ।
ଜାତିଲତିକା ତଳେରେ ଶୋଇଅଛି ନକୁଳ ॥
ଶୁକ ଡାଳମ୍ବ ଡାଳେରେ କୃଷ୍ଣ ମହିମା ଗାଏ ।
ବେଢ଼ି ଏକ ଆରେ ଶ୍ରଦ୍ଧାଭରେ ଶୁଣନ୍ତି ସୁଏ ॥
କାହିଁ କୃଷ୍ଣାଞ୍ଜନରଣ କାହିଁ କୁକ୍କୁଟ ଯୁଦ୍ଧ ।
କାହିଁ ପୁଚ୍ଛରଙ୍ଗେ ଲାଖିଲଖି ଆହାର ସନ୍ଧ ॥
କେଉଁଠାରେଣ କସ୍ତୁରୀସୁଧ ଅଛନ୍ତି ରହି ।
କୃଷ୍ଣ ସୁଗନ୍ଧ ଆଘ୍ରାଣି ଗାଣ୍ଡ ନିଶ୍ଚଳେ ରହି ॥
ତେଙ୍ଗ ଖର୍ଜୁରଗଛରେ ବାୟା ସିଅଁନ୍ତି ବସା ।
ଅଧୋହାର ରଞ୍ଜଣ ସୁଖ ବନେ ବରଷା ॥
କୁହୁ ମାରି କପୋତ ଉଚ୍ଚେ ନାଦ କରନ୍ତି ।
ପକ୍ଷୀ କୋଳାହଳ ଶୋଭାବନ ମହାସମ୍ପତ୍ତି ।
ବୃକ୍ଷ ଫଳଭରେଣ ପ୍ରଣତ ଗୋବର୍ଦ୍ଧନ ପାଦେ ।
ଲତା କୁସୁମ ବରଷି ମଧୁଧାରା ଆନନ୍ଦେ ॥

ଖଗ ମୃଗ ଦରଶନ ଲୋଭେ ସଙ୍ଗେ ଗୋଡ଼ାଇ ।
ଦେଖି ରାମକୃଷ୍ଣ ଭୁଲେ ଗୋପସୁତ ବଡ଼ାଇ ॥
ଏମନ୍ତେ ମନ୍ଦଗନ୍ଧ ଶୀତେ ସମୀର ବହେ ।
ପକ୍ୱତାଳ ଆମୋଦନ୍ତେ ରାମ ଶ୍ରୀଦାମେ କହେ ॥
ସଜରଭ ଚହଟଇ ବୃନ୍ଦ ଏଥି ଦିଗରେ ।
ବାଟ କଢ଼ାଅ ତାଳବନକୁ ଯିବା ବେଗରେ ॥
ଶୁଣି କର ଯୋଡ଼ି ବୃଷଭାନୁ କୁମାର କହେ ।
ତାଳବନରେ ଧେନୁକା ଢର. କରଣ ରହେ ॥
ଅତ ଦର୍ପିଷ୍ଠ ଦାନବ ଭୟେ ନ ଯାନ୍ତି କେହି ।
ତେଣୁ ଗୋପେରେ ଅପୂର୍ବ ତାଳ ଦେଖାତ ନାହିଁ ॥
ଶୁଣି କୋପ ଗୁରୁତର ରାମ ଅରୁଣ ଆଖି ।
ତାଳବନକୁ ଧାବନ୍ତି ସର୍ବେ ବତ୍ସ ଉପେକ୍ଷି ॥
ତାଳ ଖାଇବା ଶ୍ରଦ୍ଧାରେ ସୁଏ ଉତ୍ସୁକ ମନ୍ତ ।
ଗଗନରେ ସୁରଗଣେ ଜୟଧ୍ୱନି କରନ୍ତି ॥
କେତେ ଦୂରେଣ ଯାଇ ଦେଖିଲେ ସେ ତାଳବନ ।
ଅତି ଉଚ୍ଚ ସଞ୍ଜ ଘଞ୍ଚ ଫଳଭରେ ଶୋଭନ ॥
ଏକ ଏକ ଶାଖା ବଲ୍ଲୋଳରେ ସଲଖ ତରୁ ।
ଅଗ୍ରେ ପତ୍ର ଛତ୍ର ଛୁଇଁ ଫଳଭରେଣ ଗରୁ ॥
ବାହା ମାରି ତାଳ କେହୁ ପାଡ଼ି ଝଙ୍କାଇ ଝାଡ଼େ ।
ଭକ୍ଷେ ବୃକ୍ଷେଣ ବାଜି ଅନେକ ଅବନୀ ପଡ଼େ ॥
ରାମ ବୃକ୍ଷେକ ଉପାଡ଼ି ବୃକ୍ଷ ବୃକ୍ଷେଣ ପିଟି ।
ଯେତେ ତାଳଫଳ ଝଡ଼ି ତରୁତଳରେ ଲୋଟି ॥
କୃଷ୍ଣ ପାଦ ପ୍ରହାରନ୍ତେ ତରୁ ପ୍ରଳମ୍ବ କରେ ।
ତାଳବନ ଭାଙ୍ଗି କରି କଲେକ ନର୍ଭୟରେ ॥
ତାଳ ପଡ଼ନ୍ତେଣ ଧଡ଼ଧଡ଼ ଶବଦ କରେ ।
ଶୁଣି ଧାଇଁଲା ଧେନୁକା ଖରରୂପେଣ ଖରେ ॥
କୋପେ ଆସନ୍ତି ଅସୁରବଳ ବନ କମ୍ପାନ୍ତି ।
ନିର୍ଭୟେ ଗୋଚରାଳକର ହରି ହରି ଜପନ୍ତି ॥
ନିଜ ବନ ଭଗ୍ନ ଦେଖି ଘୋର ଗର୍ଜନ କଲା ।
ବେଗେ ବଳଦେବ ଅଙ୍ଗେ ପାଦଘାତ ମାଇଲା ॥
ଦେଖି ମଣ୍ଡି ଦୁଇ ପାଦ ରାମ ଧରିଲେ ଦୃଢ଼େ ।
ଦୁଲାଇ ବୃକ୍ଷେ ମଣ୍ଡିଲାନ୍ତି ତାଳ ଅନେକ ଝଡ଼େ ॥
ମୁଖଁ ଧର ପକାଇ ଦୈତ୍ୟ ଜୀବନ ହାରି ।
ଯେତେ ବନ୍ଧୁବର୍ଗ ପହୋଞ୍ଚ କୃଷ୍ଣ ନିବାରି ॥

ଦେଖି ଦାନବ ମରଣ ଦେବେ ପୁଷ୍ପ ବରଷି ।
ତାଳ ଖାଇଣ ଗୋପାଳେ ରାମକୃଷ୍ଣ ପ୍ରଶଂସି ॥
ତାଳଫଳ ଧରି ବୃନ୍ଦାବନେ ପୁଏ ହରଷ ।
ବନବେଶରେ ଗୋପରେ ଆସି ହୋଇଲେ ପ୍ରବେଶ ॥
ଏମନେ କୃଷ୍ଣସଙ୍ଗ ପୁଏ ନ ଛାଡନ୍ତି କ୍ଷଣେ ।
କ୍ଷଣେ ନ ରହନ୍ତି ମୁର୍ଚ୍ଛିମନ ଗୋବିନ୍ଦ ସେବନେ ॥
ଅବକାଶ ନୁହେଁ ବୃଷଭାନୁଜେମା ମିଳନେ ।
ବେନି ବିରହ ଉପାୟ ରଞ୍ଜି ଅନୁବଧାନେ ॥
ଏକଦିନେ ବୃଷଭାନୁଜେମା ସଖୀ ମେଳରେ ।
ବୃନ୍ଦାବନେ ଫଳ ତୋଳେ ସୂର୍ଯ୍ୟଜା କୂଳରେ ॥
କୃଷ୍ଣ ଦରଶନ ଲାଳସେରେ ନେତ୍ର ବଞ୍ଚଇ ।
ବୃନ୍ଦା ଆଦି ସଖୀଗଣ ସଙ୍ଗେ ସୁଖେ ବଞ୍ଚଇ ॥
ବନପତ୍ରମଳ ମନୋହର ମଙ୍ଗଳମତେ ।
ଦ୍ୱିଜକୁଳ ଧ୍ୱନି ଫୁଲବୃକ୍ଷ ମଳୟ ବାତେ ॥
କର ଯୋଡ଼ି ବୃନ୍ଦା ଜେମା ସମ୍ମୁଖରେ ଜଣାଇ ।
ଖଗ ମୃଗ ତରୁ ଲତା ଦେଖାଇବ ମଣାଇଁ ॥
ଦେଖ ୨ ବନେଶ୍ୱରୀ ଅଭିଷେକ କରନ୍ତି ଏମାନେରେ ।
ନାନା ସୁବାସ କୁସୁମକୁଳ ବରଷେ ଶିରେ ॥
କାମସେନାପତି ବସନ୍ତ ସଖାଙ୍କୁ ଦେଖ ।
ସର୍ବଜନ ସୌନ୍ଦର୍ଯ୍ୟ ସ୍ପର୍ଶି ସଦେ ଧ୍ୱଏ ଦଇବ ॥
ଅଳି ମଞ୍ଜୁକଳି ପରେ ଗୀତନାଦ କରଇ ।
ମଧୁରେଣୀ ପୁଷ୍ପକୁମ୍ଭକୁ ସମ୍ମୁଖରେ ଥାଇ ॥
ଶୁକ ପିକ ଆଦି ଦ୍ୱିଜଏ ମଙ୍ଗଳ ଗାବନ୍ତି ।
ମୃଗ ମୁଖେ ତୃଣ ଧରି ରୂପ ଶୋଭା ଭାବନ୍ତି ॥
ଶୀତଗନ୍ଧ ସେନ ସଧୀରେ ମଳୟ ମରୁତ ।
ତରୁ ଦ୍ରବ ଧାର ସ୍ରୁତ ଫଳଭରେ ପ୍ରଣତ ॥
ଚୂତ ବକୁଳ ମୁକୁଳ ଦେଖ ଭ୍ରମର ଡାକେ ।
ନବପଲ୍ଲବ ବଞ୍ଜୁଳୀ ପଖା ପଡ଼େ ଗନ୍ଧେଲେ ॥
ଶିରେ କେଶର କୁସୁମ ହେମଦଣ୍ଡୀ ଶୋଭନ ।
ଚନ୍ଦ୍ରମଣିମୟ ସିଂହାସନ ରତ୍ନଆସନ ॥
ରତ୍ନ ପୁଷ୍ପରାଜି ଏ ମଣ୍ଡପ କୁସୁମେ ମଣ୍ଡି ।
ଚଉଦିଗେ ବନ୍ଧି ପଞ୍ଚଅଷ୍ଟ ପରାଗ ଗୁଣ୍ଡି ॥
ପୁଷ୍ପ ଚନ୍ଦନ ଶ୍ରୀଫଳ ମଧୁ ଆଦି ବିଧାନେ ।
ଚମ୍ପାକଳି ଦୀପାବଳୀ ଏ ମଙ୍ଗଳାରୋପଣେ ॥

ବନେଶ୍ୱରୀ କରି ଆଗ୍ରେ ଏ ସକଳ ଜୀବେ ।
ମୂର୍ତ୍ତିମନ୍ତେ ସେବେ ଯମୁନା ଏ ସଜଣୀ ଭାବେ ॥
ଆମ୍ଭମାନଙ୍କୁ ଭୋ ଜେମା ଦୟା କରିଣ ଥିବା ।
ଅହର୍ନିଶି ସନ୍ନିଧିରେ ଯେସନ୍ତେ କରିବୁଁ ସେବା ॥
ଆଜ ଗୁରୁବାର ପୂର୍ଣ୍ଣିତିଥି ପୁଷ୍ୟା ନକ୍ଷତ୍ର ।
ଶ୍ରୀଲକ୍ଷ୍ମୀ ଯୋଗ ସୌଯୋଗରେ ଧରାଅଛନ୍ତି ॥
ଏତେ କହି ମଣିସିଂହାସନେ ବସେ କରାଇ ।
ଧୂପ ଧୂମ ଛନ୍ଦ ଭ୍ରମର ବଦନେ ଧରାଇ ॥
ଚଉପାଶେ ମିଳି ହୁଳହୁଳି ବଇଅନ୍ତି ବାଳୀ ।
ବୃନ୍ଦା ତୀର୍ଥଜଳ କୁମ୍ଭ ଯେନ ଶିରରେ ଢାଳି ॥
ନାନ୍ଦୀମୁଖୀ ଦୁବାକ୍ଷତ ଦେଇ ଆଳତି କଲେ ।
ବନଦେବୀମାନେ ପଟଆର ହୋଇ ରହିଲେ ॥
ବୃନ୍ଦା ଦ୍ୱାଦଶେ ଦ୍ୱାଦଶ ସଖୀ ଅଧିକାରିଣୀ ।
ମନୋହର ଶିରୋମଣି ବୃଷଭାନୁ ଦୁଲଣୀ ॥
ଖଗ ମୃଗ ଲତା ତରୁ ଆଦି ଆହ୍ଲାଦରେ ।
ଅହର୍ନିଶି ରତ ନିଜ କାନ୍ତ ଅନୁମୋଦରେ ॥
ପୌର୍ଣ୍ଣମାସୀ କାମବୀଜ ଗାୟତ୍ରୀ ଦେଲେ ।
ଜପ କରିବା ମାତ୍ରକେ କୃଷ୍ଣ ସନ୍ନିଧେ ମିଳେ ॥
କାମଧେନୁ ବାଞ୍ଛାତରୁ ଚିନ୍ତାମଣି ପ୍ରାପତେ ।
ଅନ୍ୟ କାର୍ଯ୍ୟ ନୁହେଁ କୃଷ୍ଣ ବାଞ୍ଛାପୂର୍ଣ୍ଣ ନମିତ୍ତେ ॥
ବନେଶ୍ୱରୀ ଅଭିଷେକ ହୋଇ ବନଭ୍ରମଣେ ।
ସୂର୍ଯ୍ୟପୂଜା ବଳାଇଣ ଗଲେ ନିଜ ସଦନେ ॥
ଏକଦିନେ ଗୋପସଭାରେଣ ଗୋକୁଳବୃନ୍ଦ ।
ରାମକୃଷ୍ଣଙ୍କୁ କୋଳରେ ଧରି ବସିଛୁ ନନ୍ଦ ॥
କୃଷ୍ଣ ବୋଲନ୍ତି ହେ ପିତା ଆମ୍ଭେ ରଖିବୁଁ ଗାଈ ।
ବନେ ବନେ ଚରାଇବୁଁ ଦୁଧ ହୋଇବ ପାଇ ॥
ହେଉ କାଲ ଠାରୁ ରଖ ଗାଈ ବୋଲାଇଲେ ତାତ ।
ସବୁ ଦୁଷ୍ଟ ଶିଷ୍ଟ ଖଣ୍ଡନ୍ତି ଯେ ସୁରଭିମାତ ॥
ମୋହନ ଜାଣି ବଞ୍ଚ ପ୍ରାତେ ପୁଏ ଗାଈ ଦୁହିଁଲେ ।
ଏକଗୋଷ୍ଠି କରି ଗାବ ସଙ୍ଗେ ବତ୍ସ ସେ ନେଲେ ॥
ଗୋପ ଗୋପଥ ପ୍ରବେଶ ଗହଳେ ଭିଡ଼ ପଡ଼ିଲା ।
ଦିଶଦିଶ ନ ଦିଶଇ ଧୂଳି ପୂରି ଉଠିଲା ॥
ଦେଖି ପୌର୍ଣ୍ଣମାସୀ ବୋଲେ ରାମକୃଷ୍ଣଙ୍କୁ ଗୁହିଁ ।
ଏତେ ଗାଈ ଏକମେଳ ହୋଇ ଚରିବେ କାହିଁ ॥

ମୋର ବୋଲ କର ଗୋଷ୍ଠ ଗୋଷ୍ଠ କରଣ ରଖ ।
ବନେ ବନେଣ ସୁରଭି ଚରି ଲଭିବେ ସୁଖ ॥
ଶୁଣି ସବୁ କୁମରଙ୍କୁ ଏହି କଥା ଯୋଗାଇ ।
ବୋଲେ ଗୋପାଳେ କେ ତୁମ୍ଭ ବୋଲ ପାରେ ଭଙ୍ଗାଇ
ଯେଉଁ ବନରେ ଯାହାକୁ ତୁମ୍ଭେ ଆଜ୍ଞା କହିବ ।
ସେହି ବଚନେ ସେହି ବନରେ ରଖିବୁଁ ଗାବ ॥
ଶୁଣି ପୌର୍ଣ୍ଣମାସୀ ଭଗବତୀ ପ୍ରସନ୍ନ ହୋଇ ।
ଅନୁରୂପେ ଅଧିକାର ମାଳ ବସନ ଦେଇ ॥
ରାମ ମଧୁବନେ ଅଧିକାରୀ ଶ୍ରୀଦାମ ସଖା ।
ମେଘଧେନୁ ତନୁ ଶ୍ୱେତବର୍ଣ୍ଣ ନୀଳପତାକା ॥
ମଣିମାଳ ଆଭରଣ କୃଷ୍ଣ ସଙ୍ଗ ରକ୍ଷଣ ।
ବନଦେବୀ ମଧୁମତୀ ସଖୀ ମୋହିନୀ ଜାଣ ॥
ସର୍ବସିଦ୍ଧି ବଳବୃଦ୍ଧି ବେନି ଜନ ଆଦରେ ।
ସୁଖେ ଚରାଅ ଗୋଧନ ଶିଙ୍ଗାନାଦ ବାଦ୍ୟରେ ॥
କୃଷ୍ଣ ବୃନ୍ଦାବନପତି ସଙ୍ଗେ ସଖା ସୁବଳ ।
କାମଧେନୁ ତନୁ ତମାଳକୂଳ ପୀତଦୁକୂଳ ॥
କଉସ୍ତୁଭ ହାର ଉରେ ଧରି ଦୁଷ୍ଟ ଦଳନେ ।
ବୃନ୍ଦାଦେବୀ ସଖୀ ଲଳିତା ଏ ବେନି ବଧାନେ ॥
ବାଇ ମୋହନ-ମୁରଲୀ ରଙ୍ଗେ ସୁରଭି ତୋଷ ।
ଯାହା ନାମେ ବଜାଇବ ସେହୁ ମିଳିବ ପାଶ ॥
କାମକାନନେ ଲବଙ୍ଗ ସଖା ସୁଭଦ୍ରସନେ ।
ନୀଳଗାବ ତନୁ ନୀଳଛବି ନୀଳ ବସନେ ॥
ମଲ୍ଲିମାଳ ଅଙ୍ଗେ ଆଭରଣ ଶୋଭା ଦିଶଇ ।
ନୃତ୍ୟରଙ୍ଗ ହାସରସେ କୃଷ୍ଣ ମନ ତୋଷଇ ॥
ପ୍ରୀତିକାମବତୀ ଅଧିଷ୍ଠାଣୀ ସୀମନ୍ତ ସଖୀ ।
ଭେରୀ ବାଦ୍ୟନାଦ କରି ସୁଖେ ସୁରଭି ରଖି ॥
ବନକୁମୁଦେ ସୁବାହୁ ସଂଗେ ପ୍ରଶସ୍ତ ସଖା ।
ଶ୍ୟାମ ଗାବ ବର୍ଣ୍ଣ ପାଣ୍ଡୁରକୁ ଛିଟ ପତାକା ॥
ହେମମାଳ ବିଭୂଷଣ ଶିଂଗା ବଂଶୀ ଧାରଣେ ।
କୃଷ୍ଣ ସଂଗେ ରଙ୍ଗ ରସ କରେ ମାଲବନ୍ଧାନେ ॥
ଦେବୀ କୁମୁଦିନୀ ସଖୀ ଚନ୍ଦ୍ରରେଖା ଆଦ୍ୟ ।
କାଷ୍ଠ ତାଳ ବାଜନରେ ଧେନୁ ଅସାଧ ସାଧ୍ୟ ॥
ବସୁଦାମ ବହୁଳାରେ ସଖା ତନୁ ବିଳାସ ।
ଶ୍ୱେତ ଗାବବର୍ଣ୍ଣ [illegible] ନିବାସ ॥

ବଇଜନ୍ତୀ ମାଳା ଗଳେ ସେବା ଦର୍ପଣ ବାସ ।
ଦେବୀ ବନ୍ଧୁବତୀ ସଖୀ ଚନ୍ଦ୍ରମୁଖୀ ବିଶ୍ୱାସ ॥
ବଂଶନାଳ ବାଦ୍ୟବାଦନରେ ସୁରଭି ବଶ ।
ଦୂରୁ ଡରି ପଳାଇବେ ଅରି ନ ପଶି ପାଶ ॥
ମିତ୍ର ସୁଦାମ ଖଦିର ବନେ ବୃଷଭ ସଖା ।
ଗାବ ଶ୍ୟାମଳୀ ଶ୍ୟାମଳା ତନୁ ନୀଳ ପତାକା ॥
ଗୁଞ୍ଜମାଳା ଆଭରଣ ଶତକମ ସେବକ ।
ଦେବୀ ଖଦେଶ୍ୱରୀ ଶଶିରେଖା ସଖୀ ଭାବୁକ ॥
ମନମୋହନ ମନ୍ତ୍ରସ୍ୱ ସ୍ୱରେ ସୁରଭି ବୋଧ ।
ନାମେ ମୁରଲୀ ବାଇଲେ ଯିବେ କୃଷ୍ଣ ସାନ୍ନିଧ ॥
ତାଳବନରେ ଅର୍ଜୁନ ଗତି ସଖା ହରଥ ।
ଶୁଭ୍ର ସୁରଭି ଶୋଣିତ ତନୁ ବସନ ଶ୍ୱେତ ॥
ରତ୍ନହାର କଣ୍ଠରେ ମୟୂରପୁଚ୍ଛ ପ୍ରଚୂରେ ।
ତାଳବତୀ ସଖୀ ଅଳକା ଯେ ବଳ ବଢୂରେ ॥
ସୁଖେ ଗୋଧନ ରଖିଣ ତୁମ୍ଭେ କୃଷ୍ଣଙ୍କୁ ସେବ ।
ଦୂରେ ଥାଇଣ ସେବା ସେହିଲେ ପ୍ରାପତ ହେବ ॥
ମହାବନେ ମହାମଲ୍ଲ ସଖାମଲ୍ଲ ସଂଗରେ ।
ଗାବ ଅରୁଣବର୍ଣ୍ଣ ଗଉରାମ୍ବର ଅଙ୍ଗରେ ॥
ବନମାଳା ଉରେ ମୟୂରର ଗୁମରେ ସେବ ।
ମାଡହେଶ୍ୱରୀ ସଖୀ ମଦନାବତୀକ ଯେ ଭାବ ॥
ସରୁ ମାଦକ ନାଦରେ ଗାବ ଆୟୁତ୍ତ ହେବ ।
ଯେଉଁସ୍ଥାନେ ଯେ ଲୋଡ଼ିବ ସେହିସ୍ଥାନକୁ ଯିବ ॥
ସ୍ତୋକକୃଷ୍ଣ ହୋଇଲେ ଭାଣ୍ଡିର କାନନପାଳ ।
ସଖା ଉଜ୍ଜ୍ୱଳ ଦର୍ପଣ ଗାବ କପିଳା ପଲ ॥
ତନୁ ଶ୍ୟାମଘନ ଶ୍ୱେତବାସ କଦମ୍ବମାଳ ।
ସେବା ତାମ୍ବୁଳ ଭାଣ୍ଡିରେଶ୍ୱରୀ ହେବ ମଂଗଳ ॥
ସଖୀ ବନନାଦିନୀ ବେଣୁବାଦ୍ୟ ଗାବରକ୍ଷଣେ ।
ପୌର୍ଣ୍ଣମାସୀ ବନେ ବନେ ପେଶି ଏତେ ଲକ୍ଷଣେ ॥
ଲୋହବନରେ ସୁବଳ ଭଦ୍ରସୁତ ସଙ୍ଗର ।
ପୀତବର୍ଣ୍ଣ ଗାବ ତନୁ ଶ୍ରୋଣି ପିଙ୍ଗଳାମ୍ବର ॥
କୁନ୍ଦମାଳା ଗଳେ ଧରେ ସେବା ମୁରଳୀ ହାତ ।
ଦେବୀ ଲୋହବତୀ ସଖୀ ଗ୍ରୀଷ୍ମା ଆରାଧ୍ୟ ନିତ ॥
ବିରକାହାଳ ନାଦେ ସୁରଭି ଶ୍ରବଣ ଡେରି ।
[illegible] ପଳାଇବେ ଶୁଣି ଶ୍ରବଣ କରି ॥

ମଧୁମଙ୍ଗଳ ହେଲେ ଶ୍ରୀବନେ ରକ୍ଷାପାଳନ ।
ସଖୀ କଙ୍କିଣୀ ଧବଳୀ ଗାବ ମେଘବରନ ॥
ଶ୍ୱେତବାସ ପଦ୍ମହାସ ମାଳାରତ୍ନେ ସେବିତ ।
ଦେଖା ଶ୍ରୀମତୀ ସଖୀ ବିଶ୍ୱାସଭାବେ ଉଦିତ ॥
ବୀଣାବାଦନେ ରଦନେ ତୃଣ ଧରନ୍ତି ନୟନୁ ।
କୋଟିଯୁଗ ମଣେ କ୍ଷଣେ କୃଷ୍ଣବିଚ୍ଛେଦ ବିନୁ ॥
ଭଦ୍ରବନରେ ଶ୍ରୀଦାମ ସଖା ଅଷ୍ଟଧ ସଙ୍ଗ ।
ଗାବତନୁ ବସନାଦି ନବ ଅରୁଣରଙ୍ଗ ॥
ଗଳେ ନାଗେଶ୍ୱର ମାଳ ଧ୍ୱଜପତାକାଧାରୀ ।
ଦେଖା ଭଦ୍ରାବତୀ ଚନ୍ଦ୍ରାବତୀ ସଙ୍ଗେ ବିହରି ॥
ରବା ବାଦନ ନାଦେ ଗୋଧନ କର ଆପୃତ ।
ଏହୁ ଦ୍ୱାଦଶ ବନେ ଦ୍ୱାଦଶଗୋଷ୍ଠ ନିର୍ମିତ ॥
ଉପବନ ଚଉବିଂଶ ଉପସଖା ବରଗେ ।
ଏହି ରୂପରେ ହାର ବସନ ସୁହୃଦ ସଙ୍ଗ ॥
ପ୍ରସନ୍ନରେ ପୌର୍ଣ୍ଣମାସୀ ଶାଢ଼ୀ ବସନ ଦେଇ ।
ଜଣେ ଜଣେ ବାଇ ଉପଦେଶ ବଚନ କହି ॥
ଯେଝାବନେ ସେବା ସେବ କୃଷ୍ଣ ହେବେ ପ୍ରାପତ ।
ବାଦ୍ୟନାଦେ ଯା କହିବ ହେବ ଶ୍ରବଣଗତ ॥
କାର୍ଯ୍ୟକାରଣେ ଯାଇଲେ ଯିବ ଶ୍ରୀକୃଷ୍ଣ ପାଶ ।
ଅନ୍ୟ ବେଳେ ଗୋଷ୍ଠରଣ ଛେକ ଗଲେଣ ଦୋଷ ॥
ସବେ ବିଶ୍ରାମ ଘାଟରେ ଆସି ହୋଇବ ଠୁଳ ।
ଏକମେଳ ହେବ ଏଥିଁ ଯିବାଆସିବା ବେଳ ॥
ଏହୁ ବସନ୍ତକୋକିଳ ଜଗିଥିବେ ଯେ ଘାଟ ।
ଆଗେ ପଛେ ଯେ ଆସିବେ ପଲଖିବେ ଏ ବାଟ ॥
ନାମ ଅନୁରୂପେ ବନସଖା ଗାବ ସଙ୍ଗତେ ।
କାନ୍ତିଧାର ବାଦ୍ୟ ସେବା ଦେଖା ସଖୀ ସଙ୍ଗତେ ॥
ଏକାଦଶ ସଙ୍କେତରେ ଅନୁକ୍ରମରେ ଚିହ୍ନ ।
ବାଦ୍ୟ ପତାକା ବାସ ସୁରଙ୍ଗ ଚଳିବେ ବନ ॥
ଶୁଣି କୁମାରେ ଆନନ୍ଦେ ବାନ୍ଧି ଯେଝା ବାଜଣା ।
ପଲ ପଲ ଚଳନ୍ତି ଗୋଧନ ନୂହ୍ନ କଲଣା ॥
ପୌର୍ଣ୍ଣମାସୀ ଆଜ୍ଞାଦେଲେ ଯୂଥେଶ୍ୱରୀ ଚଳିଲେ ।
କୃଷ୍ଣ ସଙ୍ଗେ ମନ ରଖି ଯେଝା ବନେ ମିଳିଲେ ॥
ସଙ୍ଗେ ଗୋପସୁତ ଯେ ଯାହାର ଚଳିଲେ ବାଣ୍ଟି ।
ଦେଖି ନାନ୍ଦୀମୁଖୀ ବନ୍ଦନ୍ତି ମଥା ସଣପୁ ଛୁଟି ॥

କୃଷ୍ଣ ଏକା ହୋଇ ବୃନ୍ଦାବନେ ମିଳିବା ଗୃହିଁ ।
ଜେମା ସାନ୍ନିଧ୍ୟେ ଦୂତିକା ଯାଇ ଗୁପତେ କହି ॥
ପୌର୍ଣ୍ଣମାସୀ ବିଧାନରେ ସୂନାସ୍ତିକା ବନରେ ।
ପଥ ଗୃହିଁଣ ଅଛନ୍ତି ଯମୁନାର କୂଳରେ ॥
ପୁଣି ଛନ୍ନ ଛନ୍ନ ମନ ଅତି ଉତ୍ସୁକ ହୋଇ ।
ତୁଳସୀଙ୍କି ପେଷି ଆଗେ ମାଳ ତାମ୍ବୁଳ ଦେଇ ॥
ମୁହିଁ ବାହାର ହୋଇଲି କହ ପ୍ରାଣନାଥଙ୍କୁ ।
ବସି ନବେଣି ନୟନ ଥିବେ ଗତ ପଥକୁ ॥
ଶୁଣି ହରଷେ ତୁଳସୀ ଚଳି କୃଷ୍ଣେ ମିଳିଲେ ।
ଜେମା ଚରିତ ଜଣାଇ ମାଳ ତାମ୍ବୁଳ ଦେଲେ ॥
କୃଷ୍ଣ ବଲ୍ଲଭୀ ସଙ୍କେତ ପାଇ ପୁଲକେ ତନୁ ।
ଗୃହିଁ ବୋଲେ ମଧୁମତେ ବେଗେ ରହସି ଭାନୁ ॥
ଏମନ୍ତେଣ ସେ ବିକଳ୍ପ ଜେମା ସୂର୍ଯ୍ୟପୂଜନେ ।
ସେବାପର ସଖୀ ସଙ୍ଗେ ଯଙ୍ଗେ ଗତବିଧାନେ ॥
ବେନିଜନ ମିଳନରେ ଦେହ ବୃଦ୍ଧି ପାଶୋରେ ।
ମନୋଭବ କରେ ଯୁଗଳ ଉଜ୍ଜ୍ୱଳ ରସରେ ॥
ଦେଖି ବିଳମ୍ବ ଜଟିଳା ଗମେ ଏ ଅବସରେ ।
ପଥେ ଜଗିଥିଲା ଧାତ୍ରୀ ଡାକ ଦେଲା ପାଶରେ ॥
ଶୁଣି ସଲଜ୍ଜେ ସୁନ୍ଦରୀଗଣ କୁସୁମ ତୋଳେ ।
କୃଷ୍ଣ ଆଚଳେଁ ଅନ୍ତର ଲତାଉହାଡ଼େ ଗଲେ ॥
ସଖୀମାନଙ୍କୁ ଗୃହିଁଣ ଚଳ ଜଟିଳା ବୋଲେ ।
ନବକୁଳବଧୂ କାହିଁ ବନଗହନେ ବୁଲେ ॥
ବୋଲଇ ବିଶାଖା ମାଏ ଆଜ ଅର୍କସପ୍ତମୀ ।
ପୂଜା କରିବାକୁ ନ ପାଇଲୁ ବ୍ରାହ୍ମଣ ଭ୍ରମି ॥
ବିଶ୍ୱଶର୍ମା ବୋଲ ଏକ ଦ୍ୱିଜ ମଥୁରାବାସୀ ।
ତାଙ୍କୁ ନିମନ୍ତ୍ରଣ କରନ୍ତା ଯେ କଲୁଁ ବିଶ୍ୱାସୀ ॥
ମଧୁମଙ୍ଗଳ ଶିଖାଇ ତାଙ୍କୁ ବାଟୁଁ ଭାଞ୍ଜିଲେ ।
ବ୍ରହ୍ମଚାରୀଙ୍କି ଦୂଷଣ ଧୃ ଶାସ୍ତ୍ରତ ମୂଜନେ ॥
ଶୁଣି ବୁଢ଼ୀ ବୋଇଲା ଭଞ୍ଜାଇ ସେ ବାଧ୍ରବାଦରେ ।
ମୁହିଁ ଯାଇଁ ବେନି ଜନ ଆଣିବଇଁ ଆଦରେ ॥
ଏତେ କହି ସଖୀଗଣ ସଙ୍ଗେ ଘେନି ଜଟିଳା ।
ପଥୁଁ ବିଶ୍ୱଶର୍ମା ବାହୁଡ଼ାଇ ଆଣିବ ଗଲା ॥
ଲତାଉହାଡ଼େ ସମ୍ବାଦ ହରି ଶୁଣୁ ଯେ ଥିଲେ ।
ବିପ୍ରବେଶ ଚାତୁରୀ ଚଳିଲେ କେତେଦୂରେ ବସିଲେ ॥

ଆଗେ ବିଶାଖାକୁ କରି ବୁଢ଼ୀ ପ୍ରବେଶ ହୋନ୍ତି ।
ବିପ୍ରବର ଦେଖି ଗୃହ୍ନି ଶିରେ କରଯୋଡ଼ି ॥
କଟି ନିକଞ୍ଚବସନ କନ୍ଧେ ଯଜ୍ଞୋପବୀତ ।
ଶ୍ୟାମ ଚିକ୍କଣ ଲାବଣ୍ୟତନୁ କମଳନେତ୍ର ॥
ଛତ୍ର ଉତ୍ତରୀ ଦୋସଡ଼ା ଊର୍ଦ୍ଧ୍ୱ ପୁଣ୍ଡ୍ରଭାଳେ ।
ବାହୁମୂଳେ ହୃଦୟରେ ବେଣୁ ଅଶ୍ୱତ୍ଥଦଳେ ॥
ହସ୍ତେ ତମ୍ବାପାତ୍ରୀ କୁଶବନ୍ଧ ପୁସ୍ତକ ଅଛି ।
ଶ୍ୟାମ ଗାୟନ କରନ୍ତେ ଶୁଣି ସ୍ତବଧ ପକ୍ଷୀ ॥
କର ପ୍ରସାରି କଲ୍ୟାଣ ବୃଦ୍ଧା ନମସ୍କାରକୁ ।
ବୋଲେ ଜଟିଳା କେବେହେଁ କରିବ ପ୍ରାର୍ଥୀଯାରକୁ ॥
ମୋର କୁଳବଧୂ ସୂର୍ଯ୍ୟପୂଜା କରେ ଏ ବନେ ।
ତୁମ୍ଭେ ଆଚାର୍ଯ୍ୟ ହୋଇବ ମନତୋଷି ବିଧାନେ ॥
ହରି ବୋଲନ୍ତି ଆଜନ୍ମରୁ ବ୍ରହ୍ମଚର୍ଯ୍ୟ ଦୀକ୍ଷା ।
ଗାର୍ଗ ଋଷିଙ୍କ ଶିଷ୍ୟ ସକଳ ଶାସ୍ତ୍ରରେ ଶିକ୍ଷା ॥
ନାରୀବଦନ ଅବଲୋକନ ଯହିଁ ନିଷେଧ ।
ତହିଁ କେମନ୍ତେ କରିବା ତୁଇଁ ସଙ୍କଳ୍ପବିଧି ।
ବୋଲେ ଜଟିଳା ଗୋସାଇଁ ତୁମ୍ଭେ ସକଳ ଜାଣ ।
ଯାନହେଉ ବହୁହେଉ ଯେବେ କରେ ବରଣ ॥
ଜାଣି ନ ଗଲେ ସୁକୃତ ତାର ହୁଏ ଏହାର ।
ଏହୁ ପୁରାଣ ବଚନ ତୁମ୍ଭେ ବିଚାର କର ॥
ପତିବ୍ରତା ସୂର୍ଯ୍ୟପୂଜା ତୁମ୍ଭେ ଅବଶ୍ୟ କର ।
ମଧୁମଙ୍ଗଳ ଏମନ୍ତେ ଆସି ମିଳେ ଚାତୁର ॥
ବୋଲେ ବିଶ୍ୱଶର୍ମା ତୁମ୍ଭଙ୍କୁ ଯେ କୃଷ୍ଣ ଖୋଜାଇ ।
ଚାଲ ଯିବା ବ୍ରାହ୍ମଣଙ୍କୁ ମିଷ୍ଟଅନ୍ନ ଭୁଞ୍ଜାଇ ॥
ବୋଲେ ବୃଦ୍ଧା ବେନି ଜଣ ବ୍ରହ୍ମା ଆଚାର୍ଯ୍ୟ ହୁଅ ।
ପୂଜା ବଢ଼ାଅ ଦକ୍ଷିଣା ଧନ ଦେବଇଁ ନିଅ ॥
ବିଶାଖାକୁ ଘେନି ବହୁତ ଯେ ବିନୟ ହୋଇ ।
ସନମତ କରାଇଣ ଘେନି ଆଇଲେ ଦୁଇ ॥
ଏମନ୍ତେଣ ସୂର୍ଯ୍ୟପୂଜାସ୍ଥଳେ ହେଲେ ପ୍ରବେଶ ।
ବିପ୍ରବେଶ ଗୃହ୍ନି ମନେ ରାଈ ଅତି ହରଷ ॥
ବୃଦ୍ଧା ବୋଲେ ଆଜ ମୁହିଁ ଥାଇ ପୂଜା ବଢ଼ାଇ ।
ପାର୍ଦ୍ଧ ପଟ୍ଟପାଟେ ବଧୂ ସର୍ବଅଙ୍ଗ ଧୋଆଇ ॥
ବିପ୍ରଚରଣ ଧୋଇଣ କୁଶଆସନେ ବସି ।
ଜଟିଳାର ମୁଖ ଗୃହ୍ନି ହସି ମଧୁର ଭାଷି ॥
ଆମ୍ଭେ ଆଜନ୍ମରୁ ବ୍ରହ୍ମଚର୍ଯ୍ୟ ନାରୀ ନ ଛୁଉଁ ।
କର ପ୍ରସାରୁ ଶ୍ରୀଫଳ କୁଶ ଅଲଗା ଦେଉଁ ॥
ଶୁଣି ସଖୀ ଜେମା କରାଞ୍ଜଳି କରି ଧରାଇ ।
କୁଶ ଜଳ ଫଳ ଦେଇ ସଂକଳ୍ପକୁ କରଇ ॥
ବିଧିବିଧାନରେ ରାମା ସର୍ବ ଆରାଧି ଅର୍ଘ୍ୟେ ।
ପୂଜା ବଢ଼ାଇଣ ଦ୍ୱିଜବର ବାହାର ଶୀଘ୍ରେ ॥
ବୁଢ଼ୀ ଉକଣ୍ଠ କରିଣ ବୋଲେ ସୁବେଦୀ ଦ୍ୱିଜ ।
ମୋର ବଧୂକୁ କଲ୍ୟାଣ କର ଲଭୁ ତନୁଜ ॥
ଦ୍ୱିଜ ବୋଲନ୍ତି ଏ ସର୍ବ ସୁଲକ୍ଷଣୀ ଅଙ୍ଗନା ।
ଗୃହ୍ନି ଜାଣିଲୁ କରପଲ୍ଲବ ଗର୍ଭଚିହ୍ନା ॥
ସର୍ବ ଅଇଶ୍ୱର୍ଯ୍ୟ ହେବ ପୁତ୍ରବନ୍ତି ନୋହିବ ।
ବୋଲେ ଜଟିଳା କେମନ୍ତେ କୁଳ ଉଦେ ହୋଇବ ॥
ଏଥି ପ୍ରତିକାର ବିଧି କହ ତୁମ୍ଭେ ଗୋସାଇଁ ।
ଆଜ ଚିନ୍ତାଉଦଧିରେ ମୋତେ ଦେଲ ଭସାଇ ॥
ଦ୍ୱିଜ ବୋଲନ୍ତି ସେ ଚିନ୍ତାମଣି ପ୍ରାପତ ଯାରେ ।
ସର୍ବ ମନୋରଥ ଫଳ ସିଦ୍ଧ ହୋଇବ ତାରେ ॥
ନନ୍ଦ ଯଶୋବନ୍ତୀ କୃପା କଲେ ସେ ମଣିପାଇ ।
ବୃଦ୍ଧକାଳେ ପୁତ୍ର ପାଇଲେ ସେ ଜାଣ କି ନାହିଁ ॥
ବୁଢ଼ୀ ବୋଇଲେ ସେ ବିପ୍ର ମୋର ଘେନିବା ସେବା ।
ନିତ୍ୟ ମଧ୍ୟାହ୍ନ ସମୟ ଜାଣି ଏଥି ଆସିବା ॥
ମୁନି ଦୁର୍ବାସା ଶ୍ରୀପୌର୍ଣ୍ଣମାସୀ ବେନି ଆଦେଶ ।
ବଧୂ ପୂଜିବ ତପନ ବେନିଦଶ ବରଷ ॥
ଆଜୁଁ ଆଚାର୍ଯ୍ୟ ଯେ ବ୍ରହ୍ମା ତୁମ୍ଭେ ହୋଇଲ ବେନି ।
ମନ ଖୁସି ହେଲ ଯେ ତୁମ୍ଭ ଶ୍ୟାମଗାୟନ ଶୁଣି ॥
ରାଣୀକର ହେମମୁଦ୍ରି ବିପ୍ର ଦକ୍ଷିଣା ଦେଇ ।
ବୁଢ଼ୀ ନିଜ କର ମୁଦ୍ରି ମଧୁମଙ୍ଗଳ ପାଇ ॥
ନୈବେଦ୍ୟ ଯେ ସାମଗ୍ରୀ ବନ୍ଧି ବାନ୍ଧି ଅଞ୍ଚଳେ ।
କୃଷ୍ଣ ବରଣି ବୋଲିଣ ଗଲେ ମନ ଚଞ୍ଚଳେ ॥
ବଧୂ ଘେନିଣ ଜଟିଳା ପୁରେ ପ୍ରବେଶ ହେଲେ ।
ଶୀଘ୍ର ନାଗିଣ ଭୋଜନ ନିତି ବିଧାନ କଲେ ॥
ଯହୁଁ ଜଟିଳା ଥାଇଣ ଶ୍ୟାମ ବରଣ କଲା ।
ସେହିଦିନୁଁ ସଖୀଗଣ ମନ ନିଶ୍ଚିନ୍ତ ହେଲା ॥
କୃଷ୍ଣ ସୁବଳ ମଧୁମଙ୍ଗଳ ହାସ ରସରେ ।
ନାନ୍ଦୀମୁଖୀ ଇନ୍ଦୁମତୀ ଭେଟି ଯମୁନା ତୀରେ ॥

ହରି ବୋଲନ୍ତି ପଡ଼ିଣ ଥିଲୁ ଜଟିଳା ଆଗେ ।
ମଧୁମଙ୍ଗଳ ଉପାୟେ ବଞ୍ଚି ଅଇଲୁଁ ଭାଗ୍ୟେ ॥
କୋଟିଯୁଗ ଯୁଗଳରେ ପ୍ରେମ ନୋହିବ ପାର ।
କ୍ଷଣମାତ୍ର ଭୟେ କେତେ ପ୍ରୀତି ହୋଇବ ତାର ॥
ହେବା ମିଳନରେ ବଢ଼ି ତାର ବହୁତ ହୁଏ ।
ନଣି ଆସିବେ ବନକୁ ଯେମନ୍ତେ କର ଉପାୟେ ॥
ଏତେ କହିଣ ପଣନ୍ତ ବେନି ଆଗେ ପ୍ରସାରି ।
ମୋର ମାଗୁଣି ଯେମନ୍ତ ଆଣ ସେ ଅଭିସାରି ॥
ବୋଲେ ବେନିବାଳୀ ବନମାଳି କହିଲ ଯାହା ।
ଦୁଇସଖୀ ନଷ୍ଟେ ତୁମ୍ଭର କରିବୁ ତାହା ॥
ତୁମ୍ଭ ଗୋଧନ ଦ୍ୱାଦଶ ବନ ପୂରି ଚରିଲେ ।
ଜାଣି ଅଭିମନ୍ୟୁ ଦୂରଦେଶେ ଗୋଗୋଷ୍ଠ କଲେ ॥
ଶାଶୁ ଅନ୍ଧାରକାଣି ନଣନ୍ଦ ନନ୍ଦେ ଅଚେତ ।
ଆଜ ରଜନୀରେ ଭେଟାଇଲେ କି ଦେବ ଦତ୍ତ ॥
ହରି ବୋଲେ ମନୋରଥ ପୂର୍ଣ୍ଣ ପାରେ ଯେ କରି ।
ସେହି ଅତି ପ୍ରଶଂସିତ ଏହି ଚଉଦ ପୁରି ॥
ଜୀବଦାତାଙ୍କୁ ଦେବାକୁ ସମ କି ଆନ ଅଛି ।
ଯାହା ମାଗିବ ତଥାପି ଦେବା ସତ୍ୟ କରୁଛି ॥
ବାଳୀ ବୋଲନ୍ତି ଯେ ତୁମ୍ଭ ବେନିଜନଙ୍କ ଲୀଳା ।
ସଖୀଭାବେ ଯେ ଭାବିବ ସେହି ହେବ ଉଜ୍ଜ୍ୱଳା ॥
ରାଧା ଦାମୋଦର ବ୍ରତ ଜଗତରେ ରହିବ ।
ଯେହୁ କାର୍ତ୍ତିକେ ପୂଜିବ ସେହୁ ଗୋପି ହୋଇବ ॥
ଶୁଣି ପ୍ରସନ୍ନବଦନେ ହରି ବୋଲନ୍ତି ହେଉ ।
ସନ୍ଧିବିଧାୟିନୀ ନାମ ତୁମ୍ଭ ପୁରାଣେ ରହୁ ॥
ଖଟି ବିଳମ୍ବ ନ କର ଚଳ ସଜନୀ ପାଶେ ।
ଆଜ ରଜନୀ ଉପାୟ କରି ଆଣ ବିଶ୍ୱାସେ ॥
ବାଳୀ ବୋଲନ୍ତି ସଙ୍କେତସ୍ଥଳ ଯମୁନା କୂଳ ।
ଅଛି ମନୋହର କୁଞ୍ଜ କଳ୍ପ ପାଦପ ମୂଳ ॥
ଯିବା ଆସିବାକୁ ନିକଟ ଯେ ନିଜ ନ ସ୍ଥାନ ।
ବୃନ୍ଦା କରିବ ମିଳନ ଜାଣେ ସର୍ବ ବିଧାନ ॥
ଆମ୍ଭେ ଫେରିଣ ରହିବୁଁ ଜଟି ଶାଶୁ ନନ୍ଦେ ।
ନିଶା ଶେଷେ ଯିବ ଯେଯାହାର ସଦନେ ନନ୍ଦ ॥
ଏତେ କହିଣ ଚଳିଲେ ବେନି ରାଧା ସନ୍ନିଧେ ।
ଅନ୍ତଃପୁରରେ ମିଳିଲେ ରାଧା ସଜନୀ ମଧ୍ୟେ ॥

ବୋଲେ ଜେମାଦେଇ ବେନିଜନ ବଦନ ଚାହିଁ ।
ତୁମ୍ଭେ କେଣେ ଥିଲ କସ ଅବା ଦେଖିଲ କାହିଁ ॥
ବେନିଏ ବୋଲନ୍ତି ଯାଇଥିଲୁଁ ଯମୁନା ଜଳେ
କୃଷ୍ଣ ଦେଖିଲୁଁ ଗୋଧନ ରଖେ ଗୋପାଳ ମେଳେ ॥
ବନେ ଉପାଧି କରଣ ଯେତେ ଦ୍ରବ୍ୟ ଦେଖଇ
ଚୋର ପ୍ରତିଅଙ୍ଗ ଶୋଭା କାମଭୟେ ଯୋଖଇ ॥
ଗୁଣି ଗୁଣ ଗୀତ ଗାନ୍ଧାରେ ଯେ ଗାୟନ କରେ ।
ନାନା ରତ୍ନାବଳୀ ହାରମାଳା ଗଳାରେ ଧରେ ॥
କାମ ସଂଗ୍ରାମରେ ନାମ ଆଶ୍ରେ କରି ରହିଛି ॥
ସଖା ସୁହୃଦ ସଙ୍ଗେ ଅନଙ୍ଗଦଣ୍ଡ ଦେଉଛି ॥
ନଣି ପ୍ରବେଶ ହେଲେଣ ହେବ ଭଷମ ଘାତ ।
ଯେଣୁ ଲୁଟିଲେ ତା ସୁଧାକୁମ୍ଭ ତେଣୁ କୋପିତ ॥
ଆଜ ପାରିଲେ ପ୍ରାଣବାନ୍ଧବ ସାହା ହୁଅସି ।
ଯେବେ ନ ଯିବୁ କୁସୁମକାଣ୍ଡେ ହୋଇବ ଧ୍ୱଂସି ॥
ଜଳ ବିନୁ ମୀନ ତାପନାରେ କି ବଞ୍ଚଇ ।
ଶୁଣି ଶ୍ୟାମ ସୁହାଗିଣୀ ନେତ୍ରୁଁ ନୀର ମୁଞ୍ଚଇ ॥
କୃଷ୍ଣ ବିରହ ଅନଳ ଅଙ୍ଗେ ଜଳୁ ଯେ ଥିଲା ।
ବେନି ବାଣୀ ଶୁଣି ସଜଳ ଘୃତ ହୋଇଲା ॥
ଦିନୁ ଦିନୁ ଅନୁରାଗ-ଲତା ବଢ଼ୁ ଯେ ଥିଲା ।
ପୂରି ହୃଦୟମଣ୍ଡଳ ବାହାରେଣ ମାଡ଼ିଲା ॥
ପୁଷ୍ପ ବିକଶନ୍ତେ ସୁବାସ କି ଲୁଚଣା ଯାଇ ।
ଲଜ୍ଜାବନ୍ଧ ଭାଙ୍ଗି ପ୍ରୀତିନଦୀ ପ୍ରଖରେ ବହି ॥
ମେରୁ ସମାନ ଧଇର୍ଯ୍ୟ ଧୂଳିପ୍ରାୟ ଉଡ଼ିଲା ।
ସିନ୍ଧୁ ସମାନ କୁଳମର୍ଯ୍ୟାଦା ଚଳୁଏ ହେଲା ॥
ଛନଛନ ମନ ହୋଇ ସଖୀଜନେ ପଚାରେ ।
କୃଷ୍ଣ ପାଶେ ଯିବା ଆଜ ନିଶିମନେ ବିଚାରେ ॥

ଶ୍ଲୋକଃ

ନିନ୍ଦନ୍ତୁ ପ୍ରିୟବାନ୍ଧବାଃ ଗୁରୁଜନାଃ ଗଞ୍ଜନ୍ତୁ ମୁଞ୍ଚନ୍ତୁ ବା
ଦୁର୍ବାଦଂ ପରିଘୋଷୟନ୍ତ୍ୱପିଜନାଃ ବଂଶେ
କଳଙ୍କୋଽସ୍ତୁ ବା
ତାଦୃକ୍ ପ୍ରେମ ନବାନୁରାଗମଧୁନା ମତ୍ତସ୍ୟ ମାନଂ ମୁଦା
ତତ୍ତ୍ୱଂ ନୈବ ନିବର୍ତ୍ତତେ କ୍ଷଣମପି ଶ୍ରୀକୃଷ୍ଣ-
ପାଦାମ୍ବୁଜାତ୍ ॥

ଗୀତ

ତାର ସୁଖେ ସୁଖୀ ମୁହିଁ ଆନ ନ ରୁଚେ ମୋତେ ।
ଗୋପେ କରନ୍ତୁ ସେ ବାଛପଛେ ଯେ ଯେତେ ଯେତେ ॥
ଲୋକ ଅପବାଦ ଗୁରୁଜନ ଯେ ଯେତେ ଗଞ୍ଜୁ ।
କୃଷ୍ଣ ଦୁର୍ବାଦ ଲାଗିଣ ଗୋପେ ଘୋଷଣା ବାଜୁ ॥
ବଂଶେ କଳଙ୍କ ସେ ରହୁ ମରେ ମୁହିଁ ତାହାର ।
ଶ୍ୟାମସୁନ୍ଦର ଲାଗିଣ କୁଳୁଁ ହେବ ବାହାର ॥
ଶତେତସ୍ୱର କରି ଜଗି ରଖିଥିଲେ ସଦନରେ ।
ଅହର୍ନିଶି ନୃତ୍ୟ କରେ ମୋର ହୃଦପଦ୍ମରେ ॥
ଶୁଣି ବିଶାଖିକା ବୋଲେ ରାଈ ଚଞ୍ଚଳ ଦେଖି ।
ବଡ଼ ଭଜିଲେ କି ବଡ଼ା ନଦୀ ହୁଅଇ ରଖି ॥
ନବଘନରେ ସେ ଖିଣ୍ଡ ଖଣ୍ଡ ତାପ ଛେଦଇ ।
ପ୍ରେମ ତୃଷାଙ୍କୁର ହୋଇ ଲୋକମାର୍ଗ ରୁନ୍ଧଇ ॥
ରଜନୀକାଳେ ସଜନୀ ସେହୁ ରସେ ଭାସିବୁ ।
ଆନେ ଗତ ନାହିଁ ନାହିଁ ଅଙ୍ଗେ ଅଙ୍ଗେ ମିଶିବୁ ॥
କଥା ହୁଅନ୍ତେ ସାଂୟକାଳେ ପ୍ରବେଶ ହୁଏ ।
ଆଳୀ ଘେନ ନୃପଦୁଲାଳୀ ଅଟ୍ଟାଳୀ ବିଜୟେ ॥
ଧେନୁ ବ୍ରଜେ ଉପସ୍ଥିତ ସର୍ବ ଗୋପକୁମାରେ ।
ଏକମେଳରେ ଉତ୍ତର ଗୋଷ୍ଠ ଗହଗହରେ ॥
ପଛେ ଗୋକୁଳସୁନ୍ଦର ବିଜେ କୁମାର ମାଝେ ।
ତନୁ ଇନ୍ଦ୍ରନୀଳମଣି ପାଦେ ନୂପୁର ବାଜେ ॥
କ୍ଷୀଣକଟିତଟେ ଝୀନ ପୀତପାଟପଡଣୀ ।
ନାଗେଶ୍ୱର ଓଡ଼ଆଣିକ ସେ କୁମ୍ଭକାଛେଣି ॥
ଲତାଜାଲମାଳୀ ମଲ୍ଲୀକଳି ଗନ୍ଥିଭଳି ।
ସୁରଙ୍ଗୀ ଥୋପି ଥୋପି କଟି ବେଢ଼ି ଓହଳା ॥
ଉରେ ବନମାଳା କଉସ୍ତୁଭହାର ବିରାଜେ ।
ବ୍ୟାଘ୍ର ନଖପଦକ ଅଗସ୍ତି କୋରକ ସାଜେ ॥
ଶିରେ କେକିପୁଚ୍ଛ ବଳୟ ଯେ ମୁଦି ଅଙ୍ଗୁଳି ।
ଗଳେ ଚମ୍ପକମାଳେକ କଣ୍ଠେ କିଂଶୁକକଳି ॥
ଜବାଧରେ ହାସ ଜାତି ତିଳପୁଷ୍ପ ନାସିକା ।
ମୋତିପରିଏ ତରଳ ଗୁଚ୍ଛ ମଲ୍ଲିକଳିକା ॥
ପୂର୍ଣ୍ଣ ପ୍ରସନ୍ନବଦନ ଶ୍ରମଜଳକଣାରେ ।
ନେତ୍ର ମାଳୋତ୍ପଳ ଅଳି ବଳି ଛୁରିଅନାରେ ॥
ଫୁଟି ମାଧବୀକୁସୁମ ମଲ୍ଲୀପନ୍ତି ସୁରମେ ।
ଶିରେ ମୟୂରଚନ୍ଦ୍ରିକା ଚୂଡ଼ାଗର୍ଭ ମଣ୍ଡନେ ॥
ଗର୍ଭେ କେତକୀ ପାଖୁଡ଼ା ବେଢ଼ା ଶୋଭେ ଚୂଳକୁ ।
ମହାମରକତମଣି ହେମ ବୋମ ମେଳକୁ ॥
ବେଣୁ ଶୁଣି ଗୋପତରୁଣୀ ଉଚାଟେ ଧାଇଁଲେ ।
ନେମଚକୋର ତୃଷିତେ ଚନ୍ଦ୍ରମୁଖ ଚାହିଁଲେ ॥
ରାଧେ ଗବାକ୍ଷରେ ସଖୀ ସଙ୍ଗେ ମୁଖ ବିଲୋକ ।
ସଦା ମଧୁ ପାନେ ତରଳ ପାତଳ ଅଧିକେ ॥
ନେତ୍ରସ୍ଥଳ ମୀନ ଲଭେ ଶ୍ୟାମଅଙ୍ଗ ଜୀବନ ।
ନଗ୍ରନାଗରୀ ପ୍ରଣମି ବନ୍ଦୀ ଅଣେ ଭୁବନ ॥
ଅତି ମନ ଉଦବେଗ ନେଜମା କୃଷ୍ଣ ଲାଳସେ ।
ହାଳ ମାର କର ଭିଡ଼ ଅଙ୍ଗ ମୋଡ଼ ଅଳସେ ॥
ବାଧା କେତିକ ଏକାର ବାଧା ଦେଖି ସଜନୀ ।
ସ୍ୱାବଶରେ ଅଭିସାର କର ଆଜ ରଜନୀ ॥
ସଖୀ ବାଣୀ ସୁଧା ଜାଣି ଶ୍ରବଣକୁ ରୁଚଇ ।
କୃଷ୍ଣ ଭୋଜନ ନିମିତ୍ତ ନାନା ଦ୍ରବ୍ୟ ସଞ୍ଚଇ ॥
ମନ୍ଦଗଲ କୃଷ୍ଣଙ୍କୁ କହେ ଅଙ୍ଗୁଳି ଘେନ ।
ଦେଖ ଅଟ୍ଟାଳ ବିଜୟେ ବୃଷଭାନୁନନ୍ଦନୀ ॥
ଶୁଣି ଗୁହେଁ ହରି ପୂର ଚନ୍ଦ୍ରପ୍ରଭା ପ୍ରକାଶେ ।
ପଦ୍ମ ଗନ୍ଧେ ଭ୍ରମର ଭ୍ରମେ ଗବାକ୍ଷ ପାଶେ ॥
ରତ୍ନତାଟଙ୍କ ଯୁଗଳ ଜ୍ୟୋତିଜାଲି ଝଟକେ ।
କାମ କଇବର୍ତ୍ତ କୃଷ୍ଣନେତ୍ରମୀନ ଅଟକେ ॥
ମନମଗର ନ ପାରେ ଯାଇ ସେ ଜାଲେ ବନ୍ଧ ।
ପିତା ଦର୍ଶନ ସଙ୍କେତେ କରକମଳ ମୁଦ ॥
ନାନ୍ଦୀମୁଖୀ ବୋଲେ ରାଧେ ହରି ଯୋଡ଼ିଛ କର ।
ପଦ୍ମମୁଦ୍ରିତେ ମିଳନ ହେବା କହେ ବିଗୁର ॥
ନନ୍ଦ ଦେଖି ବୋଲେ ବସୁନନ୍ଦ ବୃଦ୍ଧଗଣଙ୍କୁ ।
କୃଷ୍ଣ ନମସ୍କାର କରୁଅଛି ତୁମ୍ଭମାନଙ୍କୁ ॥
ବୃଦ୍ଧଗଣ ଦେଖି ଆନନ୍ଦରେ କଲ୍ୟାଣ କଲେ ।
ନନ୍ଦ କୋଳେ ଧରି ଧୂଳି ଝାଡ଼ି ଚୁମ୍ବନ ଦେଲେ ॥
ମାତାପାଦେ ଓଳଗନ୍ତେ କ୍ଷୀରଲୋତକ ବହେ ।
ଶିରକୁ ଆଘ୍ରାଣ କରି ଅଙ୍ଗ ଆଉଁସି ସ୍ନେହେ ॥
ଗୋଷ୍ଠେ ଗୋଧନ ମିଳାଇ ଦ୍ୱାର ସୁଗୁଣଶୀଳେ ।
କ୍ଷୀରେ ବତ୍ସମାନ ଶ୍ରମ ନାଶି ପୁରେ ମିଳିଲେ ॥
ସ୍ନାନ ସୁବେଶ ଭୋଜନେ ମାଏ ଅତି ଯତନେ ।
ପୁଣି ଗୋଷ୍ଠକୁ ବିଜୟେ ସାୟଂକାଳ ଦୋହନେ ॥

ପ୍ରାତଃକାଳ ପ୍ରାପ୍ୟେ ବାଳମାନେ ଗାଈ ଦୁହିଁଲେ ।
ଦୁଗ୍ଧଭାର ବୁହାଇଣ ନିଜପୁରେ ଅଇଲେ ॥
ପୁଣି ସୁବେଶ ହୋଇଣ ଅନ୍ନ ଭୋଜନେ ବସେ ।
ଷଡ଼ରସ ପ୍ରକାରେଣ ମିଷ୍ଟ ହରଷେ ଭୁଞ୍ଜେ ॥
ଆଚମନ ଅନ୍ତେ ମୁଖ ମାଜି ଝିନବସନେ ।
କରେ ତାମ୍ବୁଳ ମଣୋହି ବସି ଦିବ୍ୟଆସନେ ॥
ସଙ୍ଗକୁମରଙ୍କୁ ଘେନି ଗୋପସଭାରେ ବସେ ।
ରାମକୃଷ୍ଣ କୋଳେ ଧରି ନନ୍ଦ ସଭାର ମାଝେ ॥
ଗୁଣୀଗଣ ନୃତ୍ୟଗୀତରସ ପୁରାଣ ବାଣୀ ।
ବୃଦ୍ଧମାନେ ଯେ କହନ୍ତି ପୁରାତନ କାହାଣୀ ॥
ନାନାଦେଶର ପ୍ରସଙ୍ଗମାନ ଜଣାନ୍ତି ଚର ।
ଏମନ୍ତେଣ ଜଣେ କହେ କଂସ ସଭା ଭିତର ॥
ବୋଲେ ମଥୁରାକଟକୁ ଏଇକ୍ଷଣି ଅଇଲି ।
ବସୁଦେବ ସଙ୍ଗେ କଥା ସବୁ ହୋଇ ଜାଣିଲି ॥
ମଲ୍ଲମାନେ ମଲେ ଗୋପେ କୃଷ୍ଣେ କୋପ ବଢ଼ୁତ ।
ପେଶି ଅଛଇ ପ୍ରଲମ୍ବ ନାମେ ଏକ ଦଇତ ॥
ଆକାଶରେ ଶିର ଲାଗେ ଜଳେ କର ଚରଣ ।
ଅତି ଭୟଙ୍କର ଦେଖି ଲୋକ ଲଭେ ମରଣ ॥
ଗୋପେ ଘୋଷଣ ଦିଅଅ ମୂର୍ତ୍ତି ନୁହ ବାହାର ।
ଯୋଗେପଡ଼ିବ ଯେ ଆଗେ ନିଷ୍ଟ ହେବ ଆହାର ॥
ନନ୍ଦ ଶୁଣି ଭୟ ପାଇ ମନେ ଦୋସାଧି ସାଇ ।
ରାତେ ବାହାର ନୋହିବ କେହୁ ଡେଙ୍ଗୁରା ଦେଇ ॥
ସନ୍ଧି ଗୋପପୁରେ ଏକଆରେ ଲୋକ ଜାଣିଲେ ।
ନେଳା ନେଳାରେ ପ୍ରଲମ୍ବାଭୟେ ତ୍ରାସ ପାଇଲେ ॥
କେହୁ ବୋଲେ ଗୋବର୍ଦ୍ଧନେ ବସ କର ବଢ଼ାଇ ।
କେହୁ ବୋଲେ ପଳାଇଲା ଥିଲା ମୋତେ ଗୋଡ଼ାଇ ॥
କେହୁ ବୋଲେ ଉପବନ ଅନ୍ଧକାରେ ଲୁଚିଛି ।
କେହୁ ବୋଲଇ କୃଷ୍ଣଙ୍କ ଭୟ କରି ଘୁଞ୍ଚିଛି ॥
କେହୁ ବୋଲଇ ସେ ତାହା ପୁର ବସ କରିବ ।
ରାମକୃଷ୍ଣଙ୍କ ଭେଟିଲେ ଧନ ପ୍ରାଣ ହାରିବ ॥
କେହୁ ବୋଲନ୍ତି ବାଳକ ଏହୁ କରିବେ ବଧ ।
କେହୁ ବୋଲେ କଂସ ଏତେମାନଙ୍କ କେକଲେ ନାଶ ॥
କେହୁ ବୋଲେ ଦଶବାଣ ମେଳା ହୋଇ ଧରିବା ।
କେହୁ ବୋଲଇ ଦେଖିଲେ ତାଠାରେ ମରିବା ॥

କେହୁ ବୋଲଇ ଦାଣ୍ଡରେ ଶୁଣ ବାଜେ ଘୋଷଣ ।
ରାତେ ବାହାର ନୋହିବ ଥିବ ଯେଝା ସଦନ ॥
ଦ୍ୱାରେ କବାଟ ଦେଇଣ ଯେଝାପୁରେ ରହିଲେ ।
ଚଳପ୍ରଚଳ ନୋହିଣ ନିଃଶବଦ ହୋଇଲେ ॥
ଗାର୍ଗବଚନ ପୂର୍ବରୁ ଶୁଣି ନିର୍ଭୟ ନନ୍ଦ ।
ଗୋପ ମନ୍ଦ ଯେ ଚିନ୍ତିବ ନିଷ୍ଟେ ନାଶିବ କନ୍ଦ ॥
ଏମନ୍ତେଣ ଯେ ଗୋକୁଳସଭା ବେଗେ ମଣ୍ଡଳ ।
ନନ୍ଦନନ୍ଦନଙ୍କୁ ଘେନି ନିଜ ସଦନେ ମିଳ ॥
ବେନି ମାଏ ଆସିଘେନି ଗଲେ ଯେଯାହା ଧୃତ ।
ନିଦ୍ରା ଆଳସ୍ୟ ଘୂର୍ଣ୍ଣିତ ହେଲା କମଳ ନେତ୍ର ॥
ଟଳଟଳ ହୋଇ କୋଳପଡ଼େ ଧରନ୍ତି ମାଏ ।
ମୁଖ ସୁବାସଜଳେ ପଖାଳି ନିଦ୍ରା ଯାଞ୍ଚାଏ ॥
ଗୋଚାରଣେ ଅଣକତ ଅତି ଅଣକତରେ ।
ତନୁ ନ ଚଳଇ ଶ୍ରମଭରେ ନିଦ୍ରା ନେତ୍ରରେ ॥
ମୋର ଦୁଃଖକୁ କାରଣ ତୋର ଏତେରେଖା ଯେତେ ।
ଏତେ ଅବସ୍ଥା ମୁଁ ଦୀନ ଦୁଃଖୀ ଦେଖିବି କେତେ ॥
ପାଦେ ନ ମାଡ଼େ କଠାଉ କରେ ଛତା ନ ବହେ ।
ସଙ୍ଗକୁମାରେ ଧରନ୍ତେ ଧର୍ମକାହାଣୀ କହେ ॥
ଖଣ୍ଡି କଣ୍ଟକ ଖରା ବରଷା ନରେ ଗୋମାତା ।
କେହ୍ନେ କଠାଉ ମାଡ଼ିଣ ଶିରେ ଧରିବା ଛତା ॥
ଏଡ଼େ ଧର୍ମପାଳ ହୋଇ ଦୁଃଖେ ଗଞ୍ଜାଉ ତନୁ ।
ଗର୍ଭଧାରୀ ଯେହ୍ନୁ ତା ଲୁହ ରହେ କି ନୟନୁ ॥
ଏତେ କହି ସରଶିଖରଣୀ ବହଳ ଦୁଧ ।
ଚମ୍ପା ତାରଗା ଗୋଟିକା ବାଟି ପହିଁରେ ସଧ ॥
ଅନ୍ନ ଜଳତ କରିଣ ମାତା ଯତ୍ନେ ଖୁଆଇ ।
ଆଧୋର ରାମ ଦେଇ କିଛି ଦୁଧ ପିଆଇ ॥
ଆଚମନ କରାଇଣ ମୁଖ ପଣନ୍ତେ ମାଜି ।
ଦିବ୍ୟ ମନ୍ଦିରେଣ ଗଜଦନ୍ତ ପଲଙ୍କ ସାଜି ॥
ନେତ୍ରଚୁଳି ଅପସର ଜାଙ୍ଗପାଖୁଡ଼ା ପାଡ଼ି ।
ପୟଃଫେନ ପ୍ରାୟେ ଶଯ୍ୟାଘରେ ଯାଇ ପହୁଡ଼ି ॥
ଜଳ ତଇଳ ମିଶାଇ ମାଏ ସେବକେ ଦେଇ ।
କୃଷ୍ଣ ଚରଣେ ଘଷିବ ବ୍ୟଥା ଯେମନ୍ତେ ଯାଇ ॥
ନିଃଶବଦ ହୋଇ ସେବ ନିଦ ଯିବ ଯେମନ୍ତେ ।
ଯେଝା ସଦନେ ଚଳବ କୃଷ୍ଣ ନିଦ୍ରାର ଅନ୍ତେ ॥

ପୁରଜନ କଳରବ ମନ୍ଦ ନିଷେଧ କରି ।
ପୁନ ଶୟନ କରାଇ ଗଲେ ବ୍ରଜଈଶ୍ୱରୀ ॥
କୃଷ୍ଣ ଛଦ୍ମେ ଶୟନ ରାଣୀ ସଙ୍ଗେ ମନ ।
ଛନଛନ ମନ ନିଦ୍ରା ନ ଲାଗଇ ନୟନ ॥
ମଧୁମଙ୍ଗଳ ସୁବଳ ବେନି ଜଗି ଶୋଇଲେ ।
ଦ୍ୱାରକବାଟ ଦେଇଣ ଦାସେ ଘୋଷାରେ ଗଲେ ॥
ପୁରଜନ ନିଃଶବଦ ଜାଣି ଉଠିଲେ ହରି ।
ମୃଦ୍ୱାର କଳ ପଶ୍ଚିମ ଦ୍ୱାରେଣ ବାହାରି ॥
ରାଧାମୁଖଚନ୍ଦ୍ର ଶୋଭା ନେନେ ହୁଏ ପ୍ରକାଶ ।
ମହାଅନ୍ଧକାରେ ଗମନ ମନେ ନ ଯାଇ ନାଶ ॥
ମନୋରଥ ମନମଥ କରି ସାରଥି ବନେ ।
ରତିରଙ୍କ ସଙ୍କେତ କୁଞ୍ଜସଦନେ ମିଳେ ॥
ବାହୁପାଶ ନୀଳକରଜ ନାରାଜ ବରକେ ।
ଦନ୍ତ ଆୟୁଧ ଭ୍ରଶୟ୍ୟସନ୍ଧା କରେ ବିରାଜେ ॥
ଏମନ୍ତେଣ କୁଞ୍ଜେ କୁଞ୍ଜ ପଶି ରାଇ ଉଦ୍ଦେଶି ।
ନବପଲ୍ଲବେ କୁସୁମଶଯ୍ୟା ରଚିଲ ବସି ॥
ଏଥୁଅନ୍ତେ ଶୁଣ ବୃଷଭାନୁଜେମା ଚରିତ ।
ନିଶି ଅଭିସାର ଲାଗି ଅତି ଚଞ୍ଚଳ ଚିତ୍ତ ॥
ବୃନ୍ଦା ଖଟଣୀ କୁସୁମ ଗଭମାଳ ଘେନାଇ ।
ରାଧା ପ୍ରସନ୍ନବଦନ ବନଦେବୀ ଅନାଇ ॥
ଦରଶନ ଇନ୍ଦୀବର ବେନି ଶ୍ରୀକରେ ଦେଲେ ।
ଅଭିସାର କର ବେଗେ କୃଷ୍ଣ ବିଜୟେ କଲେ ॥
ବନ ନିର୍ଜନ ହୋଇଲା ଅନ୍ଧକାର ବ୍ୟାପିତ ।
ପ୍ରଦୋଷର ଶେଷେ ଅଭିସାର କର ସ୍ୱଦସ୍ତ ॥
ଫୁଲକୁଳ ପ୍ରଫୁଲ୍ଲିତ ଭୃଙ୍ଗ ସଙ୍ଗ ନ ପାଇ ।
ଅଶ୍ରୁଜଳ ଜରଜର ମକରନ୍ଦ ପକାଇ ॥
ପଥ ନ ଚଳି ପଥିକ ସ୍ଥାନେ ସ୍ଥାନେ ରହିଲେ ।
ହରି ଅଦୃଶ୍ୟ ସମୀର ଶୀତଗନ୍ଧ ବହିଲେ ॥
କୁଳବତୀ ବ୍ରୀଡ଼ା ଯେନି ହବା ଅନ୍ତର ହେଲେ ।
କାନ୍ତ କୋଳରେ କାମିନୀରତ୍ନ ଶୋଭା ପାଇଲେ ॥
ମାର ବିଶେଷରେ ଶର କରେ ବିରହୀ ପର ।
କୃଷ୍ଣ ସଙ୍କେତ ନିକୁଞ୍ଜ ନାମ ସୁମରେ ତୋର ॥
କୁଞ୍ଜେ କୁସୁମ ଶେଯାଇ ତୋ ପ୍ରତୀକ୍ଷା ଆଶାରେ ।
ଚଳ ବିଳମ୍ବ ନ କର ପ୍ରିୟେ ପତି ପାଶରେ ॥

ତୁମ୍ଭ ଅଭିସାର ହେତୁ ଗୋପେ ପ୍ରକମ୍ପା ଉଦୟେ ।
କେଶବ ବାହାର ନୁହନ୍ତି ଭଗବତୀ ଉପାୟେ ॥
ଅନୁରୂପା ସଖୀ ଜଣେ ରଖି ଶୟନେ ଚଳି ।
ସଖୀଜନଙ୍କ ସଙ୍ଗେ ଯମୁନା କୂଳରେ ମିଳି ॥
ନନ୍ଦ ଚଳି ଚଳି ଯିବ ଧୀର ମଉନମତେ ।
ଆଗେ ପଛେ ଥିବେ ସଖୀ ମଧ୍ୟେ ଚଳ ଗୁପତେ ॥
ବୃନ୍ଦା ଉପଦେଶ ପାଇ ରାଣୀ ହରଷ ଚିତ୍ତେ ।
ଶାଶୁ ନଣନ୍ଦ ଶୋଇଲେ ଗୃହ ଭଇରୁ ଅନ୍ତେ ॥
ବେଶୁଁ ବେଳ ଆନୁ ଆନ ରାଧା ଅଙ୍ଗ ବିକାର ।
କୃଷ୍ଣପକ୍ଷ ଯୋଗ୍ୟ ବେଶ ସଦା ଶୋଭାଳଙ୍କାର ॥
ସଖୀ ପ୍ରଦୋଷ ସମୟେ ରାଧା ମଧ୍ୟେ ବସାଇ ।
ଅଙ୍ଗେ ଲେପି ଗନ୍ଧ ମୃଗମଦ ଚୂଆ ମିଶାଇ ॥
କୃଷ୍ଣଭ୍ରମର ଚିକୁର ଶିର ବେଣୀ ପାନ୍ଧଲେ ।
କଲାପାଟ ଝୁମ୍ପା ଖଞ୍ଜା ଇନ୍ଦୀବର ମଣ୍ଡିଲେ ॥
କୃଷ୍ଣବେଣୀ ହେମଗିରି ଶିଖେଁ ବନ୍ଧୁ କି ଅଛି ।
କିଣି ନିତମ୍ବ ଶଇଳଖଣ୍ଡ ବଞ୍ଚିଭ ଇଚ୍ଛି ॥
କାମକନକ ରଥରେ ନୀଳ ପତକା ଜାଣି ।
ହେମ ମନ୍ଦିରେ ଶୋହନ୍ତି କିବା କାଳୀ ନାଗୁଣୀ ॥
ଦେଖନ୍ତେଣ ଯେ ଅନଙ୍ଗଶର ଅଙ୍ଗେ ଘାରଇ ।
ନବମେଘ ନବଶୁଣ୍ଡ ଧରି ମାର ବହଇ ॥
ଭାଲେ ମୃଗମଦ ଚିତ୍ର ନେତ୍ର କଜ୍ଜଳେ ରଞ୍ଜି ।
ଭ୍ରୂରୂପ ନେତ୍ରଚିତ୍ର ମିତ୍ର ମନକୁ ରଞ୍ଜି ॥
ସାଙ୍ଗୋପାଙ୍ଗରେ ଅପାଙ୍ଗ ବାଣ ଆକର୍ଣ୍ଣେ ଟାଣି ।
ଶ୍ୟାମନାଗର ସଂଗ୍ରାମେ ସଜ ତରୁଣୀମଣି ॥
କର୍ଣ୍ଣେ ତାଟଙ୍କେ ରଙ୍ଗ କସ୍ତୁରୀ ମକରୀ ଗଣ୍ଡେ ।
ଚିବୁକରେ ମୃଗମଦ ବିନ୍ଦୁ ବଦନ ମଣ୍ଡେ ॥
ତିଳପୁଷ୍ପ ନାସେ ମରକତମଣି ବସଣି ।
ଦନ୍ତ ମାଣିକ୍ୟ ଅଧର ତାମ୍ବୁଳରେ ରସାଣି ॥
ଗଳେ ନୀଳମଣି ହାର ବାହେ ମର୍କତ ତାଡ଼ ।
କରରେ ମର୍କତ ବଳୟ କାଚଭୃଙ୍ଗ ନିବାଡ଼ ॥
ନୀଳକଞ୍ଚୁକର ସୂତର ହେମଅଙ୍ଗେ ଆଚ୍ଛାଦେ ।
ଶ୍ୟାମ ଅନୁରାଗ ଫୁଟି କି ବାହାରେ ଆଚ୍ଛାଦେ ॥
ପଦେ ସୁନୀଳ ନୂପୁର ରୁରୁଯାବକ ଲକ୍ଷ୍ମୀ ।
ବେଶ ସାରି ସହଚରୀ କହିଁ ହୋଇଲେ ମୋହି ॥

ଶ୍ୟାମ ମୋହନ ମନ୍ତ୍ରର ମାଳା ଶ୍ରୀକରେ ଦେଲେ ।
ହୁଳହୁଳି ଦେଇ ଶୁଭେ ଜୟ ଆଳତି କଲେ ॥
ରାଇ ଅନୁରୂପା ତୁଳସୀଙ୍କୁ ରଖି ଶୟନେ ।
ପୁରୁଁ ବାହାର ସଜନୀମାନେ ବନଗମନେ ॥
ମଧୁମାସ କୃଷ୍ଣସପ୍ତମୀ ନିଶି ଅନ୍ଧାରେ ।
ଖାଲ ଖଣ୍ଡି କଣ୍ଟକରେ ଗମନ କଷ୍ଟ କଷ୍ଟରେ ॥
ବୃନ୍ଦା ଆଗେଣ କଢ଼ାଇ ପଛେ ଗମେ ସଜନୀ ।
ମଧ୍ୟେ ଅଷ୍ଟସଖୀ ଘେନି ରଙ୍ଗେ ଗଜଗମନୀ ॥
ରସ ସରସବଚନେ ଜେମା ଇଷିତ ହାସେ ।
ସତେ ସୁଧାନିଧି ଉଦେ ମୁଖଶୋଭା ବିକଶେ ॥
ଲୋକ ଅବଲୋକ ଶଙ୍କା ଭୟେ ହୁଏ ମଉନ ।
ପାଦ ନଖପନ୍ତି ଉଜ୍ଜ୍ୱଳରେ ପଥ ଶୋଧନ ॥
ଅନୁରାଗ ପ୍ରେମଜଳେ ଚଳେ ହଂସଗମନୀ ।
ଦେଖି ସଙ୍କୁଚି ଅଇଲା ପଦ୍ମାକାର ଅବନୀ ॥
ବୃନ୍ଦାଦେବୀ ଉପଦେଶ ମନ୍ତ୍ରପାଦୁକା ବଳେ ।
ନନ୍ଦୀଶ୍ୱର କଳ୍ପତରୁ ତଳ କୁଞ୍ଜରେ ମିଳେ ॥
ଚନ୍ଦ୍ର ଉଦେ ହେଲ ପ୍ରାୟେ ବନଶୋଭା ପ୍ରକାଶେ ।
ମକରନ୍ଦ ଉଦଗାର ପୁଷ୍ପବାସ ବିକଶେ ॥
ଚୂଆ ଚନ୍ଦନ ସୁଗନ୍ଧ ମୃଗମଦ ଆମୋଦେ ।
କୃଷ୍ଣ ଭୃଙ୍ଗମତ୍ତ ଯହିଁ ଅଙ୍ଗ ପଦ୍ମ ସୁଗନ୍ଧେ ॥
ପୂର୍ଣ୍ଣଚନ୍ଦ୍ର ଉଦେ ଦେଖି ଯେହ୍ନେ ଚକୋର ପକ୍ଷୀ ।
ପୁରେ ପ୍ରବେଶ ଅମୂଲ୍ୟନିଧି ଦରିଦ୍ର ଦେଖି ॥
ତୃଷା ସନ୍ନିଧେ ବହିଲା କିବା ନଦୀ ଜାହ୍ନବୀ ।
ହରି ସେମନ ଆନନ୍ଦ ପ୍ରାଣବଲ୍ଲଭା ଲଭି ॥
ବୃନ୍ଦା ପ୍ରବେଶ ହୋଇଣ ଆଗେ ସବୁ ଜଣାଇ ।
ଅତି ଦୁଃଖେ ରାଇ ଆଣିବାର କହେ ମଣାଇ ॥
ତୋର ଭାବେ ଯେତେଦୁଃଖ ସବୁ ସୁଖ ମଣିଲି ।
କୁଳବଧୂ ଏତେ ଦୁର୍ଗମେ କି ଆସେ ଆଣିଲି ॥
ଶୁଣି ଆନନ୍ଦରେ ହରି ଖଣ୍ଡେ ପାଛୋଟି ଆସି ।
ଯହିଁ କୋଳାଗତ କରି କାମସାଗରେ ଭାସି ॥
ରସେ ଢଳଢଳ ତନୁ ନେତ୍ର ଜଳେ ପୂରିତ ।
ବୋଲୁଁ ବୋଲୁଁ ବଢ଼ାଉଛୁ ପ୍ରେମଲୀଳା ଚରିତ ॥
ମନ୍ଦ ତଟ ବୁଡ଼ି ଉପୁଡ଼ିଲା ତୀରେ ପାଦପ ।
ମିଶି ବହିଲା କି ସରସ୍ୱତୀ ଯମୁନା ଆପ ॥
ଦେହ ବୁଦ୍ଧି ହଜାଇଲେ ବେନି ଅବଲମ୍ବନେ ।
କାମ ଅନୁକୂଳ ହୋଇ ବେନି କଲା ପାଳନେ ॥
ଭୁଜେ ଭୁଜେଣ ବନ୍ଧନ ପଡ଼ି ଫେଡ଼ି ନ ଜାଣେ ।
ଗଣ୍ଡେ ନିବିଡ଼ ଚୁମ୍ବନ ମୁଖଗନ୍ଧ ଆଘ୍ରାଣେ ॥
ଏକ ଜୀବନେ ଜୀବନ ରହି ଦୁହେଁ ମିଶିଲେ ।
ମନୋଭବ ଅନୁଭବେ ବେନି ରସେ ରମିଲେ ॥
ସଖୀଗଣ ମଧ୍ୟେଁ ବିଜୟେ କିଶୋର କିଶୋରୀ ।
ଦେଖି ସଭିଏ ହରଷ ସର୍ବ ଦୁଃଖ ବିସୋରି ॥
କୃଷ୍ଣ ନୟନ କଟାକ୍ଷବାଣ ମରମେ ଭେଦି ।
ନେତ୍ର ନିଶ୍ଚଳ ଚିତ୍ତ ଚଞ୍ଚଳ ତରଳ ହୃଦି ॥
ବୃନ୍ଦା ନିଜ ସଖୀଗଣ ଘେନି ସଭି ଆରାଧେ ।
ପୁଷ୍ପ ଚନ୍ଦନ ଅଗୁରୁ ଧୂପ ଫଳ ବିବିଧେ ॥
ମଧୁ ତାମ୍ବୂଳ ଶୀତଳ ଜଳ ବ୍ୟଞ୍ଜନ ଆଦି ।
ଯେତେବେଳେ ଯେ ସାମଗ୍ରୀ ଲୋଡ଼ା ସର୍ବ ସମ୍ପାଦି ॥
ଚନ୍ଦ୍ର ଦୀପ ହୋଇଲା ବିହୁଡ଼ି ଏ ଜଳେ ଉଜ୍ଜ୍ୱଳ ।
ନନ୍ଦୀଶ୍ୱର ବନଭୂମି ଜଳ ଦିଶେ ମଞ୍ଜୁଳ ॥
ପୁଷ୍ପ ବିକଶି ସୁଗନ୍ଧ ମକରନ୍ଦ ବରଷେ ।
ତରୁ ଦ୍ରବ ମଧୁଧାର ସ୍ରବ ଅତି ହରଷେ ॥
ଜଳ ଯମୁନା ନିର୍ମଳ ଅତି ଶୀତ ସୁଗନ୍ଧେ ।
ତଟ ତରଙ୍ଗ ଲଙ୍ଘିତ କରେ ଦର୍ଶନ ପାବେ ॥
ଦିଶେ ଦିଶେ ଦିଶେ ଦିବସ ପ୍ରକାଶ ପ୍ରକାର ।
କରେ କୋକିଳ ମଧୁର ଧ୍ୱନି ଭୃଙ୍ଗ ଝଙ୍କାର ॥
ନିଦ୍ରା ତେଜି ଖଗ ମୃଗ ସେବେ ଆନନ୍ଦ ଚିତ୍ତେ ।
ପୁଚ୍ଛ ପ୍ରସାରି ମୟୂର ନୃତ୍ୟକରେ ଅଗ୍ରତେ ॥
ଶୁକ ଶାରୀ ବସନ୍ତରେ ତୋଷେ ଗାୟନ କରେ ।
ରାଧାମାଧବ ଚରିତେ ସର୍ବେ ଶ୍ରବଣ ଜେରେ ॥
ନିଧୁବନ ପୂର୍ଣ୍ଣବିଧୁ ଉଦେ ପରମ ଶୋଭା ।
ଚନ୍ଦ୍ରଗୃହ ପ୍ରଭା ନିଧନ ସଙ୍ଗେ ସକଳ ସଭା ॥
ଦେଖି ପ୍ରମୋଦ ହୃଦକୁମୁଦ ଚନ୍ଦ୍ରଚକୋର ।
ଚିତ୍ରା ରାଧା ଅନୁରାଧା ଜ୍ୟେଷ୍ଠା ଧନିଷ୍ଠା ଆର ॥
ଆହ୍ଲାଦେ ସୁଖୀ ଖଗ ମୃଗ ଲତା ସ୍ଥାବର ।
ଚନ୍ଦ୍ର ଉଦେ ଭାବରୁ ବିଶେଷ ଗୁଣ ଆଦର ॥
ସଦା ପୂର୍ଣ୍ଣ ଅକଳଙ୍କ ଶୋଭା ଦିବା ରଜନୀ ।
ବିରହିଣୀ ନାଶୀ ସୁଖପ୍ରମୋଦିନୀ ପଦ୍ମିନୀ ॥

ତେଣୁ ଗଗନ ଚନ୍ଦ୍ରମା କ୍ଷୀଣଲାଜେ ନ ଆସି ।
ରାଧାକୃଷ୍ଣ ସେବା ସେବ କଣି ପ୍ରିୟାଙ୍କୁ ଦେଖି ॥
ଏହିରୂପେ ଶୁକ ଶାରୀ ପଦ ପ୍ରବନ୍ଧେ ଗାଏ ।
ରାଧାକୃଷ୍ଣ ସଙ୍ଗ ସଖୀ ଶୁଣି ଆନନ୍ଦ ପାଏ ॥
ମଣିମଣ୍ଡପେ ଶ୍ୟାମ ସମୀପେ ହେମବରଣୀ ।
ନବଘନମୂଳେ ତଡ଼ିତ୍‌ଲତା ପ୍ରକଟ ଜାଣି ॥
ସଖୀ ଚଉପାଶେ ବେଢ଼ି ସେବେ ହାସରସରେ ।
ଉଡ଼ୁମାଳ ପଦକ ନାନା ପରିହାସରେ ॥
ସଖୀ ଦେଖ ଭୃଙ୍ଗ ବାସନ୍ତ ଏ ଫଳ ଚୁମ୍ବଇ ।
ଆଜ ଭ୍ରମ ହୋଇ ଚନ୍ଦ୍ରମାର କୋଳେ ରମଇ ॥
କେହୁ ବୋଲଇ କୋକିଳ ରସାଳରେ ପଡ଼ିଲା ।
ସ୍ୱାଦ ସଉରଭ କପିଥିଅଲୁ କମ୍ପା ଏଡ଼ିଲା ॥
କେହୁ ବୋଲେ ଶୁକ ପୁଙ୍ଗଫଳେ ମନ ରସଇ ॥
ଏବେ ତ କେଉଁଭାଗ୍ୟେ ଦାଡ଼ିମ୍ବର ପାଶେ ଆସଇ ॥
କେହୁ ବୋଲେ କୃଷ୍ଣସାର ମୃଗ ତୃଷାରେ ଧାଏଁ ।
ତୃଷାଭରେଣ ଆରତ ହୋଇ ସ୍ୱଅର୍ଥେ ଭ୍ରମେ ॥
ଯୋଗେ ଭାଗ୍ୟବଳେ ଗଙ୍ଗାଜଳେ ଅଛଇଁ ପଶି ।
ପ୍ରେମ ପ୍ରଖର ସ୍ରୋତେ ନ ପୁଣ ଆସଇ ଭାସି ॥
କେହୁ ବୋଲେ ଆତଯାତ ଯେହ୍ନୁ କରେ ପିତଳ ।
ହେମ ପାଇଲେ ମଣଇ ସେହୁ ପିତଳ ତୁଲ୍ୟ ॥
କେହୁ ବୋଲଇ ଭସ୍ମରଚର୍ଚ୍ଚି ଯେହ୍ନୁ ଘେନଇ ।
ଘନସାରକୁ ପାଇଲେ ସେହି ସୁନା ମଣଇ ॥
କେହୁ ବୋଲନ୍ତି ମୁକୁତା ନାମ ଲୋକେ ପ୍ରଚୁର ।
ଗଜମସ୍ତକୁ ଶାମୁକୁ ଜାତ ନେନ ପ୍ରକାର ॥
ଗୁଣ ଲକ୍ଷିଣ ସାଧବ ଉତ୍ତମକୁ ଘେନନ୍ତି ।
ଅବିବେକ ଲୋକ ହୀରକୁ ପାଷାଣ ମଣନ୍ତି ॥
ସଖୀ ପଦଳରେ ବୃନ୍ଦା କୃଷ୍ଣ ଇଙ୍ଗିତେ ଭାଷେ ।
ଶ୍ୟାମ ରଙ୍ଗରେ ମିଶିଲେ ଆନରଙ୍ଗ ନ ମିଶେ ॥
ନବଘନ ଦେଖି ଶିଖୀନୃତ୍ୟ କରଇ ଯେହ୍ନୁ ।
ପୁଚ୍ଛ ଚନ୍ଦ୍ରକାଚୂଳରେ ହର ଘେନନ୍ତୁ ତେଣୁ ॥
ଭୃଙ୍ଗ ଅଙ୍ଗ ପଦ୍ମରାଗରେ ନେସ ଧୂମର ଚିହ୍ନି ।
ରାଈ ଚନ୍ଦ୍ରମା କୁଚକୁଙ୍କୁମେ ଶରଧା ବହି ॥
ପିକ ବାଣୀ ଶୁଣି ରାଧା ବଚନରେ ଶରଧା ।
କର୍ଣ୍ଣେ ଶୁଣିଲେ ହରବ କାମ ବନ୍ଧନ ବାଧା ॥

ନାନାରତ୍ନେ ହେମପଦକ ଏ ହୃଦକନ୍ଦରେ ।
ରାଈ ନାମାକ୍ଷର ରତ୍ନ ବନ୍ଧେ ରଥି ମଧ୍ୟରେ ॥
ଏହି ରସିକନାଗର ସର୍ବରସ ହୋଇଛ ।
ରସ ପ୍ରିୟସିରେ ରସବନ୍ତୀ ରସ ହେଲ ॥
କାମେ ମୋହିତ ହୋଇଣ ଅନେକ ସ୍ତୁତି କରଇ ।
ରାଧା ସଙ୍ଗେ କାମ ମୋହନମୂରତି ଧରଇ ॥
ନାରୀଶିରୋମଣି ରାଈ ଶ୍ୟାମ ପୁରୁଷହୀର ।
ତିନିଭୁବନେ ନ ଥିବ ବେନି ସମାନ ଆର ॥
ସଖୀଗଣେ ପ୍ରହ୍ଲାଦକ ବୃନ୍ଦା ପ୍ରଭୃତି ବଚନେ ।
ସଙ୍ଗ ସମାଧାନ ରାଧାକୃଷ୍ଣ ପ୍ରସନ୍ନମନେ ॥
ରାଈମୁଖଚନ୍ଦ୍ରେ କୃଷ୍ଣ ଚକ୍ଷୁ ଚକୋର ଭ୍ରମେ ।
ଶ୍ୟାମ ମୁଖପଦ୍ମେ ରାଈ ନେତ୍ରଭ୍ରମର ଚୁମ୍ବେ ।
ବେନି ଜନଙ୍କ ଲପନେ ବେନି ମଧୁର ପଡ଼େ ।
ପ୍ରେମଲାଳସରେ ଆସି ନ ପାରନ୍ତି ବାହୁଡ଼ି ॥
ନୃତ୍ୟ କରିତେ ଏମନ୍ତେ ରଙ୍ଗସ୍ଥଳେ ପ୍ରବେଶେ ।
ସଖୀ ନାନା ଯନ୍ତ୍ର ବାଇ ଗାଏ ଝଙ୍କାରରସେ ॥
ପ୍ରିୟାମନ ମୋହିବାରେ ମଧ୍ୟେ ମୋହନ ନାଚଇ ।
ସବେ ଭ୍ରମଣେ ମଣନ୍ତି ହର ମୋହ ଆଚରେ ॥
ପାଦ ପ୍ରଚୁର ସଙ୍ଗର ଅଗ୍ରେ ଶୋଭା ଧୂଳିବା ।
ତାଳମାନ ଅଂଗଭଂଗ ନାନାଭାବେ ଦୋଳିବା ॥
ବାଜଇ ନୂପୁର କଙ୍କିଣୀ ଧ୍ୱନି କ୍ଷୁଦ୍ର ଘଣ୍ଟରେ ।
ହସ୍ତ ହସ୍ତକ ମସ୍ତକ ଶତ୍ରୁ ଆକାରେ ॥
ପଞ୍ଚସ୍ୱର ଗୀତେ ଇଷିତେ ଅଧର ଭଙ୍ଗିମା ।
ନେତ୍ର ଅପାଙ୍ଗ ବଙ୍କିମ ଚୂଳେ ଭୂରୁ ଭଙ୍ଗିମା ॥
ନାଚେ ଶିଖୀଚୂଳ ନାସେ ମୋତି ପଦ୍ମ କୁଣ୍ଡଳେ ।
ନାଚେ ଘନଶ୍ୟାମ ମନରେ କ ହୃଦ୍‌ମଣ୍ଡଳେ ॥
ନାଚେ ପୁଷ୍ପ ଲତା ତରୁ ତୃଣ ମୃଗ ବିହଙ୍ଗ ।
ନାଚେ ଖେଚର କରେ ନଦୀ ସଙ୍ଗୀତ ରଙ୍ଗ ॥
ଗୃହୁଗୃହିଣୀ ଗୃହୁଗୀ ଠାଣିମାନ ହେଲା ।
ରସସାଗରେ ଭସାଇ ପ୍ରିୟା ମନ ମୋହିଲା ॥
ବିକଶିତ ପଦ୍ମେ ମଧୁକର ମେଳ ମୃଦୁତ ।
ନାଚନ୍ତେ ଲପନେ ଲପନେ ଭେଦ ଭ୍ରମେ ଭ୍ରମିତ ॥
ଗଣ୍ଡେ ମୁକୁଟରେ ତାଟଙ୍କଚନ୍ଦ ସ୍ୱେଦ ବିନ୍ଦୁକେ ।
ପ୍ରିୟା ଅନୁରାଗେ ନାଗର ଏ ଚୁମ୍ବେ ଛଟକେ ॥

କାଏ ଭ୍ରମର ଭ୍ରମିଣ ବଲୟେ ଚୁମ୍ବେ ପୁଷ୍ପକେ ।
ବାଳୀ ପଦ୍ମଗନ୍ଧି କୃଷ୍ଣ ଅଙ୍ଗ ଉପ୍ସ୍ରକେ ॥
ଅନ୍ୟେ ପ୍ରେମ ଜରଜର ବାହାରେଣି ବାମତା ।
ମୁଖ ଆଡ୍ରେ କରି ଏ କି ଉର୍ଦ୍ଧ୍ୱଁ ବୋଲେ ବନିତା ॥
କାହା ଉରେକ କରଜ କ୍ଷତ କରେ ଅଚେତେ ।
ଚମକଇ ସେ ଚତୁରୀ କଥା ରଙ୍ଗେ ଗୁପତେ ॥
କାହା ଚିବୁକ ଧରଇ କରେ କର ବାରଇ ।
ଯିବା ବେଗରେ କା ଉରପର ବାସ ହରଇ ॥
ମାଳା ଦେଇ ଏ ବରେ କଲି କାମଦୀକ୍ଷାକୁ ।
ଆଜ କାହାଁ ମନ ଅଛୁ କାମକଳା ଶିକ୍ଷାକୁ ॥
ଦେଖି କୃଷ୍ଣ ନୃତ୍ୟରସ ବଶ କାମିନୀକୁଳ ।
ଲଜ୍ଜାବତୀ ଦୂର କରି ନୃତ୍ୟ ଶିଖେ ସକଳ ॥
କେହୁ ପ୍ରେମଭ୍ରାନ୍ତ ଭଏ କୃଷ୍ଣ କରଇ କୋଳ ।
କେହୁ ଛଦ୍ମେ କହଇ ଚୁମ୍ବି ଶ୍ରବଣ ମୂଳ ॥
କେହୁ ଅଞ୍ଚଳେ ସ୍ୱେଦକଣିକା ବଦନୁ ପୋଛେ ।
କେହୁ କର୍ପୂର ଚନ୍ଦନ ପୁଷ୍ପବାସିନୀ ବାଛେ ॥
କେହୁ ଆଳଟ ଚାମର କେହୁ ପଙ୍ଖା ଢାଳଇ ।
କେହୁ ଧୂପପାନ କେହୁ ଦର୍ପଣକୁ ଧରଇ ॥
କାନ୍ତ ନୃତ୍ୟରତ ତଦଭାବେ ସେ ରସମୟୀ ।
ନୃତ୍ୟ କରନ୍ତି ରସିକବର ମନକୁ ମୋହି ॥
ପ୍ରିୟା ସ୍ୱରେଣ ଗାୟନ କରି ଯନ୍ତ୍ର ବଜାଇ ।
ମନନୟନ ଶ୍ରବଣ ଆନଠାକୁ ନ ଯାଇ ॥
ରାସରସରେ ରସିକଗୁରୁ ରାଙ୍କ ନଚାଏ ।
ଅଙ୍ଗଭଙ୍ଗ ତରଙ୍ଗରେ ତାଳମାନ ବଞ୍ଚାଏ ॥
ଗୁଣଗାନ୍ଧର୍ବିକେ ସଙ୍ଗୀତ ସାହିତ୍ୟପଠିନୀ ।
ନୃତ୍ୟ କରନ୍ତେ ରସିକବର ଭାବକୁ ଘେନି ॥
ଗୁରୁଚରଣ ଭୂଳିବା ଅଙ୍ଗଭଙ୍ଗ ତରଙ୍ଗେ ।
ଚକ୍ଷୁ ଘୂର୍ଣ୍ଣାଣୀ ଭୃକୁଟୀ ହାସ ଅଧରରଙ୍ଗେ ॥
ନାନାମତେଣ ମସ୍ତକ ମୁଖପଦ୍ମ ଫେରାଏ ।
ରସସାଗରେ ଧଇର୍ଯ୍ୟଧନ କୃଷ୍ଣ ଭସାଏ ॥
ମନ ଚେତା ବୁଦ୍ଧି ସବୁ କୃଷ୍ଣ ରଙ୍ଗରେ ଦେଇଁ ।
ପ୍ରିୟା ପରମାନନ୍ଦକୁ ହୃଦସପୂର୍ଣ୍ଣ ଥାଇ ॥
ଭାବଭାବେ ଆଲିଙ୍ଗନ ରଙ୍ଗ ଅଙ୍ଗ ଅଙ୍ଗରେ ।
ନାନା ନୃତ୍ୟ କଉତୁକ ସଖୀଗଣ ସଙ୍ଗରେ ॥

ପୁଣି ବେଣୀଜନ ଯନ୍ତ୍ର ବାଇ କରେ ଗାୟନ ।
ସଖୀଗଣଙ୍କୁ ନଚାଇ ଦେଖେ ମୁଖ ନୟନ ॥
ନାନା ନାଟକରେ ନାଟ ପଣବନ୍ଧେ ଉଲୁଟେ ।
ଶୂନ୍ୟେ ଦେଖନ୍ତି ଶଙ୍କର ସଙ୍ଗ ନନ୍ଦିଭୃଙ୍ଗୀଟେ ॥
ରାଗ ଶଙ୍କରାଭରଣ ଯେ ସକଳ ଈଶ୍ୱର ।
ଭୋଳେ ସବୁ ଐଶ୍ୱର୍ଯ୍ୟ ଦେଇ ଭୀମୁକ୍ତି ହର ॥
ପୁଣି ନାଗର ନାଗରୀ ପଣବନ୍ଧ ନର୍ତ୍ତନେ ।
ସଖୀ ତାଳଅନ୍ତେ ମାନ ନୃତ୍ୟଦେଇ ଯତନେ ॥
ସଖୀବୃନ୍ଦ କରେ କରବନ୍ଧ ମଣ୍ଡଳ ହୋଇ ।
ମଧ୍ୟେ କିଶୋରୀ କିଶୋର ନୃତ୍ୟ ଅମୃତମୟୀ ॥
ପୁଣି ବେନି ସଖୀ କନ୍ଧେ କର ମଧ୍ୟେ ନାଗର ।
ରାସରସରେ ଅନେକ ରୂପ ଲୀଳାସାଗର ॥
ରାଧାକୃଷ୍ଣ ରାସ ଦେଖି ସର୍ବେ ଆନନ୍ଦଭରେ ।
ତରୁ ପ୍ରଫୁଲ୍ଲକଳିକା ପୁଷ୍ପ ବରଷେ ଶିରେ ॥
ଗୋପୀ ବେନି ମଧ୍ୟେ ଶ୍ୟାମ ବେନି ମଧ୍ୟେ ଗୋପିନୀ ।
ରାସମଣ୍ଡଳରେ ଯେତେ କୃଷ୍ଣ ତେତେ ତରୁଣୀ ॥
କ୍ରୀଡ଼ାଶ୍ଚର୍ଯ୍ୟ ଅଗୋଚର ଦୃଷ୍ଟାନ୍ତରେ ଆଭାସେ ।
କୃଷ୍ଣଚନ୍ଦ୍ର ପ୍ରତିବିମ୍ବ ଗୋପୀଘଟେ ପ୍ରକାଶେ ॥
କାର୍ଯ୍ୟ କାରଣରେ କୃଷ୍ଣରୂପ ଗୁଣ ବହନ୍ତି ।
କେହୁ ରମଣ କେହୁ ରମଣୀ ଜାଣି ନୁହନ୍ତି ॥
ଗୋପୀ କୃଷ୍ଣଭିନ୍ନ ନୁହନ୍ତି ଏ ଏକଇ ତନୁ ।
ସବୁ ଶାସ୍ତ୍ରରେ ବଖାଣି ଜାଣି ଏ ଅନୁମାନୁ ॥
ରାଧା ଅନୁରାଧା ମଧ୍ୟେ କୃଷ୍ଣଚନ୍ଦ୍ର ବିରାଜେ ।
ଅଂଶିନୀ ଅଂଶେ ବାହୁ ଦେଇ ରାସମଣ୍ଡଳୀ ସାଜେ ॥
ଶୂନ୍ୟେ ବିଦ୍ୟାଧରୀ ଅପସରା ଗୃହେଁ ମୋହିତ ।
ବୃନ୍ଦାବନେ ଗୁଳ୍ମଲତା ହେବୁଁ ମନେ ବାଞ୍ଛିତ ॥
ରାସରସ ବହୁରୂପ ପ୍ରେମସାଗରେ ମଜ୍ଜି ।
ପୁଣି ମନସିଜ ରସରାଜ ବେଶକୁ ସାଜି ॥
କଳକୁଣ୍ଠଣୀ ଯନ୍ତ୍ରରେ କମନୀୟ ମକର ।
ଅଙ୍ଗ କନକ ବସନ ମାଣିକ୍ୟ କଣ୍ଠ ମାଳାର ॥
ମାଳ୍ପୀଳବାଲେ ନିର୍ମିତ ଶୃଙ୍ଗ ଦଶନ ହୀରା ।
ପୁଷ୍ପ ସାଗରେ ରସନା ହସେ ବଦନ ତୋରା ॥
ଚଉ ଚରଣ ମର୍କତ ନଖ ମୋତି ବିରାଜେ ।
ପୁଚ୍ଛ ଗରୁଡ଼ ଭଙ୍ଗିରେ ଅଷ୍ଟରତନ ସାଜେ ॥

ଖଗପୁଚ୍ଛ ଚନ୍ଦ୍ରିକାର ଝଲକେ ଚମତ୍କାରେ ।
ଦିବ୍ୟ କନକ ମଣ୍ଡପାସନ ପୁଷ୍ପବାସରେ ॥
ଶ୍ରୀଚନ୍ଦନ ପଲଙ୍କରେ ଉପର ଆସ୍ତରଣ ।
ପୀତନେତ୍ର ଝାଲରେ ମୁକ୍ତାହାର ଦର୍ପଣ ॥
ଖଞ୍ଜା ରତନ ଝଲକପାଟୀ ନୀଳଅମ୍ବର ।
ଚଉକଣେ ଲମ୍ବେ କୁରୁବେଲ ଶୁଭ୍ର ଚାମର ॥
ଝମ୍ପାପୁଷ୍ପ ଚମ୍ପା ଥୋପା ଥୋପା କୁନ୍ଦକଳରେ ।
ମଧ୍ୟେ କେତକୀ ପାଖଡ଼ା ମଣ୍ଡି ଧାଡ଼ିମାଳରେ ॥
ମୃଦୁଳ କେଶର କୁସୁମ ରକ୍ତଚନ୍ଦ୍ର ସଟେଳ ।
ବହୁଚନ୍ଦ୍ର ଉଦେ କି ଏ ନବଜଳଦ କୋଳ ॥
ମୀନକେତନ ପତାକା ଧ୍ୱଜ କଳସ ତେଜେ ।
ମନମଥ ମନ ମନ୍ତ୍ରି ଉଡେ ଏ ବନ୍ଧ ବକ୍ରେ ॥
ଚନ୍ଦ୍ର ଚନ୍ଦ୍ରାତପ ଝାଲି ଚନ୍ଦ୍ରକାନ୍ତି ସ୍ତମ୍ଭରେ ।
ସୁଭବାଡ଼ ପୀଢ଼ ହେମାସନ ଜୁଳ ସମ୍ଭାରେ ॥
ତହିଁରେ ବିରାଜେ ମଦନମୋହନ ମୁରାରି ।
ବାମଜାନୁ ପରେ କୋଳେ ଧରି ଏ ପ୍ରିୟବଧି ॥
କାମରାଜ ହରବିଜେ କରେ ବୀରବେଶରେ ।
ବାମେ କୁସୁମ କୋଦଣ୍ଡ କାଣ୍ଡ ଦକ୍ଷିଣ କରେ ॥
ପାଦସରୋଜେ ମଞ୍ଜୀର ଅନର୍ଗଳ ତୋଡ଼ର ।
ସିଂହକଟିତଟେ ପୀତପଟ ମେଖଳା ସାର ॥
ବାମେ କେତକୀର ଛୁରି ବୀରନେତ ଉଡ଼ଇ ।
ଦେଖି କୁଳବତୀ ପଥରେ ଚମକ ପଡ଼ଇ ॥
ବାହେ ବାହୁଟି ଗ୍ରୀବେ ଠଣୀ ଅଙ୍ଗୁଳିରେ ମୁଦ୍ରିକା ।
ସର୍ବାଙ୍ଗରେ ଚଉସର ଲମ୍ବେ ନବମାଳିକା ॥
ପଦ୍ମ ପଦକ କୌସ୍ତୁଭହାର ହେମମେହଡ଼ରେ ।
ମଧ୍ୟେ ହୀରାର ନାୟକ ନାନାରତ୍ନ ବେଢ଼ରେ ॥
ଚନ୍ଦ୍ର ଆଦି ଗ୍ରହ ତାରାଗଣ ଏକତ୍ର ଜଳ କି ।
ହରି ହୃଦୟ ନାଭିମଣ୍ଡଳେ ଜନ୍ମନେଲେ କି ॥
ବିମ୍ବାଧରେ ମନ୍ଦମୃଦୁ ହସି ତମ୍ବୋଳ ଭୁଞ୍ଜେ ।
କର୍ଣ୍ଣେ ମକରକୁଣ୍ଡଳ ଗଣ୍ଡଦେଶେ ବିରାଜେ ॥
ଭାଲେ କସ୍ତୁରୀତିଳକ ଘଞ୍ଚ ଘଞ୍ଚ ଅଳକା ।
ହେମପଟାରେ ଖଞ୍ଜିଣି ମୋତିପନ୍ତି ଝଲକା ॥
ରତ୍ନକଷଟି ମୁକୁଟ ତାକୁ କୁସୁମ ଗଭା ।
ଶିଖ ଶିଖେ ଶିଖିପୁଚ୍ଛ ଗର୍ଭେ କେତକୀ ଶୋଭା ॥

ପୁଷ୍ପକେଶର ଭ୍ରମର ଝମ୍ପା ଧନୁ ମଣ୍ଡିତ ।
ଭୃଙ୍ଗ ଗୁଣ ଟଙ୍କାରେ କନ୍ଦର୍ପ ଦର୍ପ ଖଣ୍ଡିତ ॥
ପରିହରି ଉଡେ ତ୍ରିଭୁବନେ ଜମ୍ବୁପତାକା ।
ସାକ୍ଷାତରେ ମନମଥରେ ଏ ମନ୍ମଥ ଏକା ॥
ମନଗମନ ମକର ଯାନ ସଙ୍ଗୀବାଳାର ।
ରାଧାକୃଷ୍ଣ ଯହିଁ ବିଜେ ଶୁଣ କେ କହୁ ତାର ॥
ମୂର୍ତ୍ତିମନ୍ତେ ନବମଦନ ଏ ରତି କୋଳରେ ।
ହେମମକର ଉପରେ କଳ୍ପତରୁ ମୂଳରେ ॥
ବୃନ୍ଦା କାମବିଜେ-ପୂଜା କରି କଲେ ଆଳତି ।
ବୃଷ୍ଟି ହେଲେ ପୁଷ୍ପ ପାଟ ଜତି ମଲ୍ଲୀ ମାଳତୀ ॥
ସେହ୍ନା ସେବା ଧରି ପଟଆରି କାମିନୀକୁଳ ।
ଶୋଭାଦେଖି ଅସମ୍ଭାଳ ସଖୀ ମଦନେ ଭୋଳ ॥
କେହୁ ବାମା ଅଙ୍ଗଭଙ୍ଗିମାରେ ରହେ ଆଳସ୍ୟେ ।
ବାହୁ ତୋଳନ୍ତେ ଶରସନ୍ଧି କୁଚକଳସେ ॥
କେତେ ଚମକି ଚକ୍ଷୁରି ରହେ ସଲଜ୍ଜଭାବେ ।
କାହା ମରମେ ଭେଦନ୍ତେ ମୋହେ ଅବଶ ଲମ୍ବେ ॥
ବେବେଗ ବଣ୍ଟନେରେ କୁସୁମକାଣ୍ଡ ସମ୍ବନ ହୁଏ ।
ମୃତ୍ୟୁସଞ୍ଜୀବନୀ ହେଲ କାଏ ଚେତନା ପାଏ ॥
କୃଷ୍ଣ ଅଧର ତାମ୍ବୁଲ ପ୍ରେମଚନ୍ଦ୍ରକୁ ବନ୍ଧି ।
ପାଶ ସଖୀ ଦେଖି କର୍ଣ୍ଣେ କହି ଅନ୍ଧାରେ କାନ୍ଦି ॥
ଯେତେ ହରିହି ସଦନେ ନାଧିଦେବେଶ ଶୁନ୍ଧି ।
ଶଠ ମିତ୍ର ହରି ନେଲ କାଏ ଛଦ୍ମ ବନ୍ଧି ॥
କେଉଁ ବାଳା ଗଳାମାଳା ହୁଏ ସୁମନବାଣ ।
କାହା ଉପରେ ପରାଗ ଧୂଳି ବରଷେ ପୁଣ ॥
କାହା ପରେ ପଡ଼େ ଅବିରଳେ ଅବିରଗୁଣ୍ଡି ।
କାହିଁ ମକରନ୍ଦ ପଣୀର ସଲିଳ ନଉଡ଼ି ॥
ଫଗୁଗୁଣ୍ଡି ପଡ଼ି ଜଡ଼ି ଅଙ୍ଗ ସୁରଙ୍ଗ ଶୋଭି ।
କୁଚଶମ୍ଭୁ ପୁଷ୍ପଶରଘାତେ ଶ୍ରୋଣୀକ ବନ୍ଧି ॥
ଚନ୍ଦ୍ର ଚନ୍ଦନଜଳେ ଭୂଷିତ କାହାର ତନୁ ।
କାହା ଶିରେ ପୁଷ୍ପ ନଉଡ଼ଇ କୁସୁମଧନୁ ॥
ଅଦ୍ଭୁତ କାରକ ଶର କାହାର କୁଚେ ହାବୁଡ଼ି ।
ବାଧା ଛିଣ୍ଡଇ କଞ୍ଚୁଳିବାସ ବିଳଗେ ପଡ଼ି ॥
କର କମ୍ପିବାର ବାସ ଉତରେ ଧରି ନପାରେ ।
ମନୋଭାବ ଭୟେ କି ଏ ଶମ୍ଭୁହରିଅମ୍ବରେ ॥

କାହା କବରୀ ଫିଟନ୍ତେ କରେ ସାଞ୍ଜୋଇ ବାଳୀ ।
ଏହି ସମୟେ ତାର ଉରଜୁଁ ବସନ ଟଳି ॥
କେଶ ଛନ୍ଦ କରେ ବନ୍ଧ ବାସ ନ ମାରେ ରଖି ।
ପିଠି ଦେଇଣ ରହନ୍ତେ ପୁଷ୍ପସର ଉପେକ୍ଷି ॥
କେଉଁ ନାଗରୀ ନାଗର ସଙ୍ଗେ ସଂଗ୍ରାମ ସଜ ।
ଭ୍ରୂକୋଦଣ୍ଡ ଅଞ୍ଜନ ଗୁଣ ନେତ୍ରନାରାଜ ॥
ଟାଣି ଆକର୍ଣ୍ଣ ଯେ ପରିଯନ୍ତ କଟାକ୍ଷେ ସନ୍ଧି ।
ପ୍ରହରର କରି ହରି ତାର ହୃଦକୁ ଭେଦି ॥
କେହୁ କେଶବାସ ଅସମ୍ଭାଳେ ସଖୀ ଉହାଡ଼େ ।
କେହୁ ଶର ପଡ଼ନ୍ତେଣ କରକମଳେ ଆଡ଼େ ॥
କେହୁ ଅଶଙ୍କିତେ ଶରଘାତେ ଲତା ଅନ୍ତରେ ।
କେହୁ ଲୁଚିଣ ରହଇ ନାଗରୀଗଣ ଭିତରେ ॥
ମନଭେଦୀ ସର୍ବଜାଣେ କୃଷ୍ଣ କୁସୁମବାଣ ।
ଯହିଁ ଥିଲେ ତହିଁମିଳେ ଭେଦେ ମର୍ମ ଖୋଜିଣ ॥
ଶରପଥ ଆତଯାତ ବାଟେ ଅସ୍ତ୍ରର ଧାରୁ ।
ତନୁ ଜରଜର କମ୍ପଭର ରମ୍ଭାରମ୍ଭୋରୁ ॥
ଅଷ୍ଟଦଳେ ପ୍ରେମପୁଷ୍ଟା ଅଷ୍ଟସଖୀ ଅଛନ୍ତି ।
ରାଈ ରତିପ୍ରିୟ ବଳ ଘେନି ତହିଁ ମିଳନ୍ତି ॥
ପୂର୍ବେ ଲଳିତାର ସମୀପରେ ମିଳିଲେ ଯାଇ ।
ବାଳୀ ପୂଜା କରି ପୁଷ୍ପାଞ୍ଜଳି ତାମ୍ବୁଳ ଦେଇ ॥
ବୋଲେ ଲଳିତା ମକର ଶ୍ରବଣରେ ଜଣାଅ ।
ଏହି ମରମେ ତରୁଣୀ ଲତା ଧୀରେ ହଣାଅ ॥
ବୃନ୍ଦାବନ ଚନ୍ଦ୍ର ଆହ୍ଲାଦେ ଏ ବନଜୀବ ।
ଏବେ ବିପରୀତ ହେଉଅଛି କି ଅସମ୍ଭବ ॥
ମନସିଜ ଦ୍ୱିଜରାଜ ରଜନୀରେ ବିହର ।
ଯାନ ଚଢ଼ି ଧନୁ ଧରିବାକୁ ନୁହନ୍ତି ହର ॥
ଶମ୍ଭୁ ପ୍ରାୟେ କି ମଣୁଛ ବାଳା ଉରଜ ବେନି ।
ଖଣ୍ଡଚନ୍ଦ୍ର ପ୍ରାୟେ ମଣି ଭାଲ ପନ୍ନଗ ବେଣୀ ॥
କଣ୍ଠେ ଗରଳ ନୁହଇ ଏହୁ ମର୍କତ ହାର ।
ଭସ୍ମ ନୁହେ ଅଙ୍ଗ ଲେପନ ଏ ଚନ୍ଦନ ସାର ॥
ନୁହେ ତ୍ରିଶୂଳ ତ୍ରିବଳି ନୁହେ ଡମ୍ବରୁ କଟି ।
ପଶୁ ଶୋଭାଙ୍କ ବନ୍ଧିଲେ ପଶୁପତି ନୁହେଟି ॥
ଧନୁ ନ ସନ୍ଧ ଶରକୁ ମଦନ ଶଙ୍କର ଭ୍ରମେ ।
ନବ ଅବୋଧ ଅବଳା ସହିପାରୁ କି ଆମ୍ଭେ ॥

ଶୁଣି ଲଳିତା ତହୁଁ ରୋଷରେ ଉପମା ବାଣୀ ।
ତହୁଁ ଐଶାନ୍ୟେ ବିଶାଖାପାଶେ ପ୍ରବେଶ ପୁଣି ॥
ଦେଖି ପାଦେ ଅର୍ଘ୍ୟ ଦେଇ ପୂଜା କରେ ଦମ୍ପତି ।
ନିଜ ସେବା ସେହି ତୋଷି ରାଇ ଗୋବିନ୍ଦେ ମତି ॥
ରସ ଶୁଶ୍ରୂଷା ବଚନେ ଲୋଚନରେ କଟାକ୍ଷେ ।
କରେ ଇଙ୍ଗିତ ଇଷିତେ ଦୃଷ୍ଟାନ୍ତରେ ପ୍ରତ୍ୟକ୍ଷେ ॥
ନବକାମଦେବ ଦିଗବିଜେ ବାସବ ଗୃହିଁ ।
ତେଣୁ ସହସ୍ରେକଯୋନି ନିଜ ତନୁରେ ବହି ॥
ବ୍ରହ୍ମା ବିଷ୍ଣୁ ଶିବ ଆଦି ପ୍ରିୟା ଅର୍ଦ୍ଧାଙ୍ଗେ ଧରି ।
ଖଗ ମୃଗ ନ ମଣି ମାନି ତ ରମଣୀକରି ॥
ପ୍ରିୟବକ୍ଷ ରତି ଆଶ୍ରେ ତେଜେ କନ୍ଦର୍ପଚାପ ।
ତୁମ୍ଭ ପ୍ରିୟବକ୍ଷ ପ୍ରୀତି ଆମ୍ଭଠାରେ କି କୋପ ॥
ବନେ ଏକାନ୍ତେ ବସନ୍ତେ ନିଶି ନବକାମିନୀ ।
ରୂପ ଲାବଣ୍ୟସାଗରେ ଭାସି ମୂର୍ଚ୍ଛିତ ଜାଣି ॥
ଖଣ୍ଡଖଣ୍ଡ କରୁଅଛି ଅନନ୍ତ ମକରଧ୍ୱଜ ।
ମାରି ଧନୁର୍ଦ୍ଧର ହୋଇ ମୂର୍ଚ୍ଛିତରେ ନାରାଜ ॥
ଅଶକତେ ଭାସିଗଲି କୁଳୁଁ ଉଦ୍ଧରି ନିଅ ।
ମୋହଜନଙ୍କୁ ବିମ୍ବାଅଧରୁ ଅମୃତ ଦିଅ ।
ବହୁରୂପେ ବିଶାଖିକା ବାଣୀ ଶୁଣି ଚଳିଲେ ।
ତହିଁ ଉତ୍ତରୁ ଚମ୍ପକଲତା ପାଶେ ମିଳିଲେ ॥
ପୂଜା କରି ବାଳା ଚମ୍ପାମାଳା ଗଳାରେ ଦେଲେ ।
ସେହି ଭ୍ରମର ଉପମା ବିନୟରେ କହିଲେ ॥
ନଦୀ ଗିରି ମନୋହର ଯେଉଁ ତରୁ ଲତାରେ ।
ବଡ଼ ପ୍ରଥମେ ଉପାଡ଼ କି ଏ ସଖୀ ଲତାରେ ॥
କାମ ସମଗ୍ର ବିଜୟେ ଗୃହିଁ ଦୁଃଖ ମୋଚନ ।
ଅଷ୍ଟଚରଣ ଚତୁରଭୁଜ ଖଞ୍ଜଲୋଚନ ॥
ରାଧା କୃଷ୍ଣଚନ୍ଦ୍ର ସଙ୍ଗ ନବ ମକରେ ଗୃହିଁ ।
ତେଣୁ ଶୀତେ କମ୍ପେ ତନୁ ଜାଡ଼ ବଚନ ବହି ॥
ଚନ୍ଦ୍ର ତୁଷାର ବରଷେ ପୁଷ୍ପଧନୁ ଗଗନ ।
କଲୁଁ ମକରେ ଲାବଣ୍ୟ ଜଳେ ପ୍ରୟାଗ ସ୍ନାନ ।
ଘେନ କୁଚକୁମ୍ଭ ଦାନ କୃଷ୍ଣ ସୁଦ୍ୱିଜରାଜ ।
ତନୁ ଦକ୍ଷିଣାକୁ ଦେବୁଁ ଫଳ ଲଭିବୁଁ ଆଜ ॥
ନେତ୍ରପଦ୍ମେ ସୁଖୀ ଦେଖି ଉଦେ ଅରୁଣାଧର ।
ଶୀତ ଖାତିରୁ ମୁକତ ହେବୁଁ ଲାଗିଲେ କର ॥

ସୁଧା ଅଧରୁ ହବିଷ୍ୟ ପାନ କରିବୁଁ ବ୍ରତୀ ।
ରସ ଉତ୍ପଳରେ ଉଜାଗର ହୋଇବୁଁ ରାତ୍ର ॥
ଶୁଣି ପ୍ରସନ୍ନ ମକର ସ୍ନାନ ବ୍ରତ ଶ୍ରୀକୃଷ୍ଣ ।
ନେତ୍ରେ ସୁଦେବୀ ସଜନୀ ଦେଖି ପରମତୃଷ୍ଣ ॥
ରତ୍ନଝରରେ ସୁବାସ ନୀରେ ପାଦ ପଖାଳି ।
ନାନା ସୁଗନ୍ଧେ ପୂଜନ୍ତି ଦେଇ ପୁଷ୍ପଅଞ୍ଜଳି ॥
କରଯୁଗଳ ଯୋଡ଼ନ୍ତି ସ୍ତୁତି ବଚନ ଭଣେ ।
ଜୟ ମଦନମୋହନ ରସ ରାଧାରମଣେ ॥
ଜୟ କୁସୁମକୋଦଣ୍ଡକାନ୍ତ ମକରଧ୍ୱଜ ।
ଜୟ ପୀତାମ୍ବର ବେଣୁଧର ଗୋକୁଳରାଜ ॥
ଜୟ ବୃନ୍ଦାବନଚନ୍ଦ୍ର ନେତ୍ରସୁଖଦାୟକ ।
ଜୟ ରସିକଶେଖର ରଙ୍ଗଭୂମି ନାୟକ ॥
ମୃଦୁମଧୁର ମୁରଳୀ ପୂର୍ଣ୍ଣଚନ୍ଦ୍ର ବଦନ ।
ଶୋଭାସମୁଦ୍ର କୁଣ୍ଡଳେ କୋଟି କୋଟି ମଦନ ॥
ଦେଖି ପାଷାଣ ତରଳ ନଦୀ ସ୍ଖଳିତେ ରହେ ।
ଗୃହ୍ନି ଧଇର୍ଯ୍ୟ ପାରେ କି ରଖି ଯୁବତୀ ଦେହେ ॥
ଯେଉଁ ମକର ଖେଳାଇ ଅମ୍ଭ ହୃଦେ ନଗୃଅ ।
ମନମୋହନ ପାଦେ ଓଟାରି ପଛ ଯୁଆଅ ॥
ଏତେ କହି ଅଧୋମୁଖେ ମହୀ ଚରଣେ ଘଷି ।
ତହୁଁ ପଶ୍ଚିମେ ରଙ୍ଗଦେବୀ ପାରୁଶେ ଆସି ॥
ରଙ୍ଗେ ପୂଜା କରି ରଙ୍ଗ ଗୁଞ୍ଜମାଳାଭରଣେ ।
ବୋଲେ ରଙ୍ଗଭୂମି ଭ୍ରମ ନବବାଳା ମାରଣେ ॥
କାମକାଣ୍ଡ ଭେଦନ୍ତେଣ ଅଙ୍ଗେ ବ୍ୟଥା ନ ଘେନୁ ।
ଭ୍ରୂମନ୍ଥ ଲୋଚନ ଗୃହାଣୀ ଶର ମନ୍ଥଇ ତନୁ ॥
ବାହୁପାଶ ବନ୍ଧନକୁ ମନ କରି ଚାପଇ ।
ତୀକ୍ଷ୍ଣ ନଖାଙ୍କୁଶ ଗୃହ୍ନି କୁଚକୁମ୍ଭ କମ୍ପଇ ॥
ଭ୍ରୂମନ୍ଥ ବିମ୍ବାଧର ମଧୁ ମଦ ବୃନ୍ଦାବନେ ଲାଗେ ।
ଗୁଣ ଗାନ କଲେ କି ହେବ ତା ଚେତନା ରାଗେ ॥
ଏଣୁ ନିଜ ଦେହେ ଆଯତ୍ତ ଯେ ନାହିଁ ଆମ୍ଭର ।
ପରିରମ୍ଭ କରି ଲୋଡ଼େ ବାହୁ ତନୁ ଭ୍ରମର ॥
ମନମଥ ଲାବଣ୍ୟ ସରୋବରରେ ଭାସଇ ।
ମୁଖପଦ୍ମ ମକରନ୍ଦ ନେତ୍ର ଅଳି ଚୁମ୍ବଇ ॥
କୁଚ ବେନି ଚକ୍ରବାକ ଏଥୁ ତଟାଂଗ ଇଚ୍ଛି ।
କଟକାଇ କରିବାକୁ କେହୁ ଅସାଧ ଅଛି ॥

ରଂଗଦେବୀ ଅଂଗନବେଦି ବନସ୍ଥ ବାଗରେ ।
ଶୁଣି ନଇଁଲେ ଚଳି ମିଳେ ଶଶୀ ଆଗରେ ॥
ନଭଗ୍ରଳ କରି ବାଳୀ ପୂଜ ପୁଷ୍ପଚନ୍ଦନେ ।
ଖଦି ପକାଇ କହଇ ସ୍ତୁତିରସ ବଚନେ ॥
ହେମାଞ୍ଚଳେ ନୀଳାଞ୍ଚଳେ ଘନେ ବିଦ୍ୟୁତସ୍ଥଳ ।
ଦେଖି ଯମୁନାଗଙ୍ଗା ସ୍ଖଳିତ ପାଷାଣ ଜଳ ॥
ଲୌହ ପୁଷ୍ପରୁ କୋମଳପୁଷ୍ପ ଲୌହରୁ ତୀକ୍ଷ୍ଣ ।
ପଞ୍ଚଶର ବୋଲି ଏକେ ଏକେ ଏ ଲକ୍ଷ ଲକ୍ଷ ॥
ଜୀବ ଅଜୀବ ପ୍ରାୟେ ନିର୍ଜୀବ ତରୁପଲ୍ଲବେ ।
ନଭଲୋକଙ୍କୁ ଦୁର୍ଲ୍ଲଭ ଭୂବଲୋକେ ସୁଲଭେ ॥
ଲୋଚନକୁ ଅଗୋଚର ବଚନକୁ ରସେ ।
କୁଳବଧୂବ୍ରତହତ ଯେବା ଧଇର୍ଯ୍ୟ ଧ୍ୱଂସେ ॥
ଧନୁର୍ଦ୍ଧର କୁଜନକୁ ଦଳ ସୁଜନ ପାଳେ ।
ବୃନ୍ଦାବନ ଧନୁର୍ଦ୍ଧର ନବଅବଳାଦଳେ ॥
ଏଣୁ ମହଇ ଧଇର୍ଯ୍ୟଲକ୍ଷ୍ମୀ ଘେନି ପଳାଇ ।
ଉରଗାଂଗି ବାଳା ମନ ଜଳ ନିତ୍ୟ ବଳାଇ ॥
ଶତ୍ରୁ ସନମାନ ବଚନ ସେ ପାଇ ଚଳିଲେ ।
ଦକ୍ଷିଣରେ ତୁଂଗବିଦ୍ୟା ସଖୀ ପାଶେ ମିଳିଲେ ॥
ରାଧାମାଧବ ଆଗମ ଦେଖି ସାନନ୍ଦବାଳା ।
ବେନି ପୂଜା କରି ଦେଲେ ପଦ୍ମ କଦମ୍ବମାଳା ॥
ପରିବାଦିନୀ ବାଦନ ମେଘ ମହ୍ଲାର ରାଗେ ।
ଗୃହ୍ନି ଚହଳ ଚାତୁର୍ଯ୍ୟ ଶ୍ଳେଷ ରୂପକ ବାଗେ ॥
ବୃନ୍ଦାବନ ପୁରନ୍ଦର ବିଜେ ଉଚିତ ବନେ ।
ପୁଷ୍ପଧନୁ ଧରିଣ ଅବଳା ଦର୍ପଭଞ୍ଜନେ ॥
ଦଶଦିଗେ ଯୋଡ଼ି ଶ୍ୟାମଘନ ନବ ଉଚ୍ଛନ୍ନ ।
କାନ୍ତି କାନ୍ତା ଏ ଉଚିତ ଧନୁଘୋଷ ଗର୍ଜନ ॥
କେକୀ ପିଛ ଆର୍ଦ୍ରାବଳୀ ହାର ବକମାଳିକା ।
ଶିରକୁସୁମ ନିକର ବରଷାରେ କରକା ॥
କାମଦାବାନଳ ନାଶି ନେତ୍ରଚାତକ ତୋଷ ।
ଅଂଗ ଅବଗାହରଣେ ଜାତ ବିବିଧ ରସ ॥
ପ୍ରେମାଙ୍କୁର ପିକବାଣୀ ଜାଢ଼ି କହିଲେ ।
କୁଟ କେକୀ ନାଦେ କଙ୍କଣୀ ଡାହୁକ ଡାକିଲେ ॥
କୁଳବଧୂ କୁଳଲକ୍ଷ୍ମୀ ପ୍ରେମନଦୀ ବହିଲେ ।
ଧୀର ମହତଚିତ୍ତ ଉପୁଡ଼ି ଯୁଗେ ମାଡ଼ିଲେ ॥

ମଧୁମାସରେ ଅକାଳ ବୃଷ୍ଟି ଚଇତମତା ।
ରତି କ୍ରୀଡ଼ାରସେ ମତ୍ତ ବ୍ରୀଡ଼ା ଦୂରେଣଗତା ॥
ଯୁବା ଯୁବତୀଯୂଥ ବିଅର୍ଥେ କର ଅନର୍ଥ ।
ମନମଥ ମନ୍ମଥର ତୁମ୍ଭେ ଯେ ମନୋରଥ ॥
ବେନି ଜନେ ଆଶ୍ରେ କରିଥିବୁଁ ସନ୍ନିଧାନରେ ।
ଆମ୍ଭମାନଙ୍କୁ ସ୍ୱଦୟା ଥିବ ସାବଧାନରେ ॥
ଶୁଣି ସରସ ବଚନ କୃଷ୍ଣ ହରଷେ ଚଳି ।
ଅଗ୍ନିକୋଣେ ଚନ୍ଦ୍ରରେଖା ପୁରଦ୍ୱାରେଣ ମିଳି ॥
ଦେଖି ଷଡ଼ଅର୍ଘ୍ୟ ପାଦପୂଜା କରିଣ ବାଳା ।
ଗଳୁଁ ଚନ୍ଦ୍ରକାନ୍ତ ମଣିମାଳା ଲମ୍ବାଇ ଗଳା ॥
ଧରି ଦର୍ପଣ ଚିବୁକରେ ହାସରସେଣ ଭଣେ ।
ପ୍ରିୟା କୁଚକୁଙ୍କୁମରେ ତନୁ ଗଉର ଦିଶେ ॥
କାଞ୍ଚିକେଶରେ କି ମତ୍ତଭୃଙ୍ଗ ଅଙ୍ଗ ଘଷିଲି ।
କିବା କାମହେମ ଶ୍ୟାମକଷଟିରେ କଷିଲି ॥
ଶୁଦ୍ଧଜାମ୍ବୁନଦ ଚହ୍ଲ ଷଷ୍ଟି ସହସ୍ର ବାନି ।
ଦ୍ୟୁତି ଦଣ୍ଡ ରସେ ପରିପୂର୍ଣ୍ଣ ଅମୂଲ୍ୟ ଧ୍ୱନ ॥
ଦେବେ ହେମଗିରି ଆଶ୍ରେ କରି ବଇରି ସାଧି ।
ତୁମ୍ଭେ କାମ ସାଧ ରାଧା କୁଚଗିରି ଆରାଧି ॥
ତେଣୁ ସକଳ ସାଧିବ ରତିସଂଗ୍ରାମେ ଜିତା ।
ଏବେ ତୁମ୍ଭ ପରିଜନେ କାମ କରେ ଅହନ୍ତା ॥
ଶରି ଭେଦି ଆମ୍ଭ ଅନ୍ତେ ରହି ନୁହେ ବାହାର ।
ମନେ ବିବେକ ଧରି ଆସୁତ କଲି ବାହାର ॥
ତୁମ୍ଭ ଯୋଗୁଁ ନାଶ ଗଲୁଁ ଆମ୍ଭେ ସକଳ ନାରୀ ।
ରଖି ମଦନକଦନାନଳୁଁ ଉପାୟ କରି ॥
ତନୁ ତନୁ ମିଳନରେ ସେହୁ ଅତନୁ ଘୁଞ୍ଚେ ।
ଯେହୁ ବିଯୋଗୀ ତାର ତହୁଁ କେବେହେଁ ନ ମୁଞ୍ଚେ ॥
ଅଷ୍ଟଦିଗେ ପ୍ରେମଶ୍ରେଷ୍ଠ ସଖୀ ଉଲ୍ଲସି ରସେ ।
ରତିରସେ ମିଳି ମତ୍ତ ଅତି ତନୁଆଳସ୍ୟେ ॥
ଅଧୋଉର୍ଦ୍ଧ୍ୱେ ଯାନ ତୋଳି ମଧ୍ୟେ ଧନିଷ୍ଠାଗ୍ରତେ ।
କୁଚକୁମ୍ଭ ନଖରେଖା ନବଚନ୍ଦ୍ର ବିଦିତେ ॥
ତେଣି ଚତୁରୀ ପୁଷ୍ପଚନ୍ଦନେ କଲି ଅର୍ଚ୍ଚନ ।
କହେ ଇଙ୍ଗିତେ ଉଚିତ ନଭଚର କଚନ ॥
ରାଧା ସନ୍ନିଧି ଜ୍ୟେଷ୍ଠାକୁ ପେଶି ଅଛି ଆରତ ।
ଆହେ ଗୋକୁଳଚନ୍ଦ୍ରମା ଏହା ତ ଅନୁଚିତ ॥

ଜ୍ୟେଷ୍ଠ ସଙ୍ଗେ ଆଗେ ଭୋଗ ହେଲେ କନିଷ୍ଠ ଯୋଗ୍ୟ ।
ଲୋକସମାଜର ଲୋକ କରି ଅବିଧି ମାଗ ॥
ଶୁଣି ବ୍ରତ ମଣି ଜ୍ୟେଷ୍ଠାପାଶେ ମିଳିଲେ ଯାଇ ।
ଦେଖି ମୂର୍ଚ୍ଛି ବାଳୀ ତାରାବଳୀ ହାରକୁ ଦେଇ ॥
ବୋଲେ ଚତୁରବର ଚତୁରୀ ବଚନେ ଜିଣି ।
ସପତ୍ନୀଙ୍କ ଯୋଗେ ଧନିଷ୍ଠା ମକର ବଖାଣି ॥
ଦେଖ ପ୍ରତ୍ୟକ୍ଷେ ଧନିଷ୍ଠା କୁମ୍ଭେ ଶଶୀ ଶୋଭିତା ।
ତନୁ ଭୂଷା ଲତା ଶରଣ ଦକ୍ଷିଣେ ଅଯାନା ॥
ଅନୁକୂଳେ ମୂର୍ଦ୍ଧିକୁମ୍ଭ ଗୃହୀଁ ଚଳେ ଉତ୍ତରେ ।
ଏମନ୍ତେ ଜାଣ ଭ୍ରମଣ ସଡ଼କର ଭିତରେ ॥
ଯହିଁ ମନ ତହିଁ ଯାନ ବୃନ୍ଦାଦେବୀ ନିର୍ମାଣ ।
ଲକ୍ଷ ଲକ୍ଷ ହୁଏ ପୁଷ୍ପପଞ୍ଚଅକ୍ଷୟ ବାଣ ॥
ସବୁ ଯୁବତୀ ମିଳି ଶିରେ କୁସୁମ ଢାଳନ୍ତି ।
ଆଜୁଁ ମଦନଗୋପାଳ ନାମ ହେଉ ବୋଲନ୍ତି ॥
କେହୁ ବୋଲେ ଏହୁ ବନପତିଙ୍କ ଶୁକନଖ ।
ହରିଣାକ୍ଷୀ ବକ୍ଷ ବିଦାରଣ ଶୋଣିତ ଦେଖ ॥
କ୍ଷୀଣକଟି ଗୃହୀଁ ଗଜଗତି ସ୍ତନକଟେ ରହି ।
ଏକ ଆରକୁ କହନ୍ତି ଏଥି କେଶରୀ ନାହିଁ ॥
ପ୍ରତ୍ୟକ୍ଷରେ ଏହି ବନ ଦେଖି କଲୁଁ ଆଶ୍ରୟ ।
ସିଂହ ପରିଜନ ହୋଇ କାମକୋଳେ ଭୟ ॥
ଆମ୍ଭେ ତୁମ୍ଭ ବଳଭୋଗ ଆଗେ ନୋହୁ ନା ଯୋଗ୍ୟ ।
ନିଭୃତ କୁଞ୍ଜେରଭରି କର ଇଚ୍ଛାରେ ଭୋଗ ॥
ରତିଉତ୍ସୁକେ ସକଳେ କହି ସରସ ବାଣୀ ।
ଲକ୍ଷକାମ ଦର୍ପ କରି ଶୁଦ୍ଧ ତରୁଣୀମଣି ॥
କାମଅନଳେ ହେମବରଣୀ ଦଗଧ ହୋଇ ।
ଗୁଡ଼ କୁଟିଳ ଉଜ୍ଜ୍ୱଳରସ କାମକୁ ବହି ॥
ଏମନ୍ତେଣ କଉତୁକ ବହୁରୂପ ପ୍ରବନ୍ଧେ ।
ଅକଥିତ ସରସ୍ୱତୀ ଅଗୋଚର ବିବୁଧେ ॥
କ୍ରୀଡ଼ା ଆଶ୍ଚର୍ଯ୍ୟ ଯମୁନାକୂଳେ ନିକୁଞ୍ଜବନେ ।
କାନ୍ତକୋଳେ ରାଧା ସଖୀ ମୁଖ ଦେଖେ ନୟନେ ॥
କୃଷ୍ଣ ସେବନେ ରାଧିକା ରୂପଶୋଭା କନକ ।
ଏଣୁ ମାଧୁର୍ଯ୍ୟରସରେ ସୁଖ ବଢ଼େ ଅନେକ ॥
ଏମନ୍ତେଣ କୃଷ୍ଣ ଯାନ ତେଜି ପ୍ରିୟାକୁ ଘେନି ।
ହେମମଣ୍ଡପରେ ସିଂହାସନେ ବିଜୟେ ବେନି ॥

ସେବା ଆଲବାଲ ପଟ୍ଟଆଳ ନାଟଶାଳବୃନ୍ଦ ।
କାମରାଜାଧିରାଜ ସମ୍ପତ୍ତି ବୃନ୍ଦାବନେନ୍ଦ୍ର ॥
ପୁଷ୍ପ ଚନ୍ଦ୍ରାତପ ପଥୋପାସାର କୁସୁମମାଳ ।
ପୁଷ୍ପବଞ୍ଜଣୀ ଗୃହର ଛତ୍ରଚାମ୍ବର ଚଉଳ ।
ଅନୁକ୍ଷଣ ହୁଏ ଚଉଦିଗେ କୁସୁମ ବୃଷ୍ଟି ।
ଅଗ୍ରଧୂପ ଧୂଆଁ ଗନ୍ଧ ଦଶଦିଗେ ପ୍ରକଟି ॥
କୃଷ୍ଣ ପୁଷ୍ପଧନୁଶର ବୃନ୍ଦା କରେ ଦେଲେ ।
ସାରବେଶ ଶ୍ରୀଅଙ୍ଗୁ ଲଜ୍ଜିତା ଉଲଗି କଲେ ॥
ସୁନ୍ଦରୀ ରମଣୀ ବଦନ ହାସ ମୁଖଅମ୍ବୁଜ ।
ସର୍ବଅଙ୍ଗ ଶୂନ୍ୟ ପୀତାମ୍ବର କେବଳ ମାତ୍ରେ ॥
ରାଧାଅଙ୍ଗ ଶୋଭା ସଜ୍ଜରତ୍ନ ଭୂଷିତ ହୋଇ ।
ଏଣୁ ସାକ୍ଷାତ ମନ୍ମଥ ମନ୍ମଥଙ୍କୁ ମୋହି ॥
ବୃନ୍ଦା ସମ୍ପାଦ ନାନା ଉପାଧି ଅଣାଇବକ ।
ରୁଚି ରୁଚିର ସ୍ୱାଦୁ ମଧୁର ମଧୁମାଦକ ॥
ସୁବାସିତ ପୁଷ୍ପରସସାର କନକପାତ୍ରେ ।
ଭୃଙ୍ଗା ଧରି ଢୋଳା ଗୁଣି ସଞ୍ଚି ଅନେକ ଯତ୍ନେ ॥
ଏହୁ ମଦନବର୍ଦ୍ଧନ ମଧୁ ନାମ ଏହାର ।
ପାନେ ପ୍ରମତ୍ତ ଉଦ୍ଧତ ରତି ରଣବିହାର ॥
ବୃନ୍ଦା ଜଣାଇ ସମ୍ମୁଖରେ ମଧୁପାତ୍ର ଧରିଲେ ।
କୃଷ୍ଣ କିଛି ପାନ କରି ତହୁଁ ରାଧାଙ୍କି ଦେଲେ ॥
ଚେଲାଞ୍ଚଳ ଉହାଡ଼େ ରାଣୀ ପାଇ କେତେଟି ।
ଯେତେ ପାତ୍ରେ ଥିଲା ଶେଷ ସଖୀ ପାଇଲେ ବାଣ୍ଟି ॥
କହୁଁ କହୁଁ ଅରୁଣବର୍ଣ୍ଣ ନେତ୍ରସରୋଜ ।
ମତ୍ତ ବାତୁଳ ସ୍ମରତେ ଏକ ଆରେକ ସଜ ॥
ଟହଟହ ହସ କେଶବାସ ଅସମ୍ଭାଳରେ ।
ଟଳଟଳ ଚଳ ବିଚଳିତ ହାରମାଳରେ ॥
ଗଦଗଦ କଥା ପୁନଃ ପୁନଃ କଳରବରେ ।
କାହ୍ନୁ କାହ୍ନୁ ପିବା କୁଞ୍ଜେ ଭଲ ଉଲ୍ଲବରେ ॥
ନେଲା ନେଲା ମନ ଦେଲା ମନ ମନମୀଳରେ ।
ହର ହର ସ୍ମରଭୟ ହର କୁଞ୍ଜ କୁଞ୍ଜରେ ॥
ଚଳ ଚଳ କାନ୍ତ ଅବଲମ୍ବ କାହିଁକି ବିଳମ୍ବ ।
ଦେଖ ଦେଖ ଗାଦେ ଅନଙ୍ଗ ସର୍ବାଙ୍ଗେ ପ୍ରଲମ୍ବ ॥
ପଦେ ପଦ ନଖେ ନଖ ମିଶି ମୁକୁଟମଣି ।
ଏହୁ ଏହୁ ପ୍ରାଣନ୍ମୁଖ ଦେଖ ହୃଦୟେ ହାଣି ॥

କେହୁ ଅସନ ଧରିଣ ସ୍ମରଶାସ୍ତ୍ରକୁ ପଢ଼େ ।
ଏକ ଆରେକରେ ବଖାଣନ୍ତେ କନ୍ଦଳ ବଢ଼େ ॥
ଶିବ ସମାଧି ଭାଙ୍ଗିବାପାଇଁ ମଦନ ଗଲା ।
ସୁଦ୍ଧାନ୍ତେଣ ସେ ମଦନାନଳେ ଦହନ ହେଲା ॥
ରତିପ୍ରିୟା ଧରାମୃତ ପାନେ ଅକ୍ଷୟ ଯେଣୁ ।
ଠାବେ ଠାବେ ରହେ ତେଣୁ ଭସ୍ମ ହୋଇଲେ ତନୁ ॥
ସର୍ବଜନ ମନେ କାମିନୀର ନୟନମୀନ ।
ତେଣୁ ନାମ ତାର ମନସିଜ ମୀନକେତନ ॥
ଆଉ ଜଣେ ଥାଇ ବୋଲେ ଅଛି ଅନେକ ସ୍ଥାନେ ।
କାମୀ କାମିନୀଙ୍କ ମୁଖ କୁଚଜଘନାଶନେ ॥
କେହୁ ବୋଲଇ ନନ୍ଦୀଶ୍ୱର ରମ୍ୟବନ ସଦନେ ।
କେହୁ ବୋଲଇ ସୁଗନ୍ଧ ପୁଷ୍ପଚନ୍ଦ୍ର ଚନ୍ଦନେ ॥
କେହୁ ବୋଲଇ ବସନ୍ତଙ୍କ ପିକବଚନେ ।
କେହୁ ବୋଲଇ ମାଦକ ମଧୁ ଅମୃତାଶନେ ॥
କେହୁ ବୋଲେ ଭବଭୟେ କାମଶ୍ୟାମେ ଶରଣ ।
ଯେଣୁ ଥୋଇଣ ଭ୍ରୂଲତାରୂପ ନୟନବାଣ ॥
ଖଳନ୍ତିକ ଲୁହେ ଭଲ ନବନାସା ମାରଣେ ।
ଦେଖ ମକର ଚଢ଼ିଣ କହୁଅଛି ଶ୍ରବଣେ ॥
ପୁଣି ଏକଜଣ ଭାଷେ ତହିଁ ସଖୀଗଣରେ ।
ପଡ଼ିଛନ୍ତି ନିଜ ପ୍ରିୟବକ୍ଷ ରତିରଣରେ ॥
ହେମବକ୍ଷରୂପେ ମହାଯୋଗୀ ଯୋଗକୁ ଭାଙ୍ଗି ।
କଣ୍ଠରେ ମତ୍ତ ମୋହି ରତିରଣରେ ସାଜି ॥
ବାହୁପାଶ ନଖକୁଚ ଦନ୍ତକ୍ଷତ ଆୟୁଧେ ।
ହାସଚୁମ୍ବନ ହୁଙ୍କାର ନାଦ ତର୍ଜନ ଯୁଦ୍ଧେ ॥
ତନୁ ତନୁ ଜଡ଼ି ଗଡ଼ାଗଡ଼ି ମାଲବନ୍ଧାଣେ ।
ଚଉଷଠିବନ୍ଧେ ରଣେ ନେତ୍ର ଶରସନ୍ଧାନେ ॥
ମହାଦେବଙ୍କୁ ଜିଣି ଜଗତେ ଅଜିତକାମ ।
ବ୍ରହ୍ମା ଆଦି ଦେବ ଦର୍ପ ଦଳ ଦର୍ପକ ନାମ ॥
ପୁଣି ଆରସର କହୁଅଛି ଏକଇ ବାମା ।
ସତ୍ୟ ତହିଁ ଅଧିକେ ସେ ଭାଙ୍ଗେ ହରଗରିମା ॥
ତ୍ରିପୁରମଣୀ ବଶରେ ଶିବ ଉଲଗ ହେଲେ ।
ତାରାବଳୀ ଅମ୍ବରକୁ ଉର୍ଦ୍ଧ୍ୱେ ଫିଙ୍ଗିଣ ଦେଲେ ॥
ତେଣୁ ଗଗନ ନାମ ଅମ୍ବର ତାରାବଳୀରେ ।
ହରଦିଗମ୍ବର ରତି ସୁଖ ସାର ସଂସାରେ ॥

ପୁଣ ଆଗପଛ ତହିଁ ଏକ ସଜମ୍ମ ବୋଲେ ।
ଉବିବଞ୍ଚ ରତି ଦେଖି ଶିବ ସୁରତିଭୋଳେ ॥
ଅପମ୍ଭାଳେ ହର ମହାବୀର୍ଯ୍ୟ ସ୍ଖଳିତ ହୁଏ ।
ପାରରସ ନାମ ବନ୍ଧ କେବେ ବିନାଶ ନୁହେ ॥
ଏହିମତେ କାମ ଉନମତେ ରସବାଉଳେ ।
ବୃନ୍ଦାଦି ପେଷ୍ଟା କୁଞ୍ଜ ସଦନେ ପ୍ରବେଶ କଲେ ॥
ପୂର୍ବେ ଶଯାତଳେ ଚନ୍ଦ୍ରରେଖା ଦକ୍ଷିଣେ କୁଞ୍ଜେ ।
ଚମ୍ପକଲତା ନୈଋତେ ରଙ୍ଗଦେବୀ ବିରାଜେ ॥
ପଶ୍ଚିମରେ ତୁଙ୍ଗବିଦ୍ୟା ବାଟିମ ସୁଦେବୀ ଶୋହେ ।
ଲଳିତା ଉତ୍ତରେ ଯେ ଈଶାନେ ବିଶାଖା ରହେ ॥
ମଧ୍ୟ ଶ୍ରୀକୁଞ୍ଜ କୁସୁମଶେଯେ ରାଈ ନାଗର ।
ଅଙ୍ଗେ ଅଙ୍ଗ ମିଶି ରହେ ଯେହ୍ନେ ଗଙ୍ଗାସାଗର ॥
ହବ୍ୟମର୍କତାଦି ଜାମ୍ବୁନଦ ନଦୀ ଏବେ କି ?
ଏକସଙ୍ଗ ହୋଇ ବନ୍ଧ ଭବସିନ୍ଧୁ ଭେଦ କି ?
କାମଅନଳ ଶୀତଳ କରି ପ୍ରେମଜଳରେ ।
ରସସାଗର ଉଛୁଳି ପୂରି ସର୍ବଆଳରେ ॥
କୁଞ୍ଜେ କୁଞ୍ଜେ କୃଷ୍ଣ ସଖୀ ସଙ୍ଗତେ ରତିରଙ୍ଗ ।
ଚୁମ୍ବେ ଅନେକ କନକପଦ୍ମ ଏକଇ ଭୃଙ୍ଗ ॥
କୃଷ୍ଣ ଅଦ୍ଭୁତ ଚରିତ ଏକ ବହୁତ ମୂର୍ତ୍ତି ।
ଜଣେ ଜଣେ ଜାଣନ୍ତି ସେ ହରି ମୋଭବେ ପ୍ରୀତ ॥
ସଖୀମାନେ ଅପମାନେ ଡ଼ଗ ମେଲିବା ଦେଖି ।
ଏକ ଆରକୁ ଲୁଗୁଇ ବଞ୍ଚେ ସକଳ ସଖୀ ॥
ମଧ୍ୟ ନିଭୃତ କୁଞ୍ଜରେ ରାଧାକୃଷ୍ଣ ସୁରତେ ।
ମୂର୍ତ୍ତିମନ୍ତେଣ ଶୃଙ୍ଗାର ରସପ୍ରବନ୍ଧ ଯେତେ ॥
ରତ୍ନପଲଙ୍କ ହଂସତୂଳ ତୂଳି ନେତ ମୁରୁଳି ।
ସୁବାସିତ ଫୁଲଦଳ ମିଶି କର୍ପୂରଧୂଳି ॥
ପୁଷ୍ପଗବାକ୍ଷରେ ଧୀରେ ଧୀରେ ମଳୟାନିଳ ।
ଗୃହଭୂମିର ଆଳଟ ଯନ୍ତ୍ର ବାତ ଶୀତଳ ॥
ଚନ୍ଦ୍ରଜ୍ୟୋତି ଚନ୍ଦ୍ରାତପ ଚନ୍ଦ୍ରଟାଣବନ୍ଧରେ ।
ବୃନ୍ଦା ଯତନେ ଶ୍ରୀକୁଞ୍ଜ ମଣ୍ଡି ନାନା ଛନ୍ଦରେ ॥
ନବନାଗର ନାଗରୀ ତହିଁ ରତିରସରେ ।
ନାନା ରସକଳା ବର୍ଦ୍ଧି ତହିଁ ପ୍ରୀତିବଶରେ ॥
ରତିଶ୍ରାନ୍ତେ ବୃନ୍ଦା ଶୀତ ଉପଚାର ବିଧାନେ ।
ଏହି ସମୟରେ ଶୀତକର ଉଦେ ଗଗନେ ॥

ସ୍ୱରୁଚନ୍ଦନ ବାଞ୍ଛଣୀ ଚମ୍ପାଲତା ହସ୍ତରେ ।
ମନ୍ଦସୁଗନ୍ଧ ଶୀତ ମରୁତ ଆତଯାତରେ ॥
ହେମରତ୍ନ ମଣିମୟ ଝରି ସୁଦେବୀ ସେବେ ।
ମୁଖ ପଖାଳି ଶ୍ରମ ବିନାଶି ପ୍ରିୟାନୁଭବେ ॥
ବେନି ବଦନେ ତାମ୍ବୁଳ ଲାଗି ଲଳିତା କରେ ।
ଗନ୍ଧଚନ୍ଦନ କର୍ପୂର ଅଙ୍ଗେ ବିଶାଖା ବୋଳେ ॥
ସୁବାସିତ ପୁଷ୍ପମାଳା ହୃଦେ ଚିତ୍ରା ଲମ୍ବାଏ ।
ରୂପମଞ୍ଜରୀ ଗୁଣମଞ୍ଜରୀ ପାଦସମ୍ବାହେ ॥
ଚନ୍ଦ୍ରରେଖା ଚନ୍ଦ୍ରକାନ୍ତ ମଣିଦର୍ପଣ ଧରେ ।
ଘନସାର ଚନ୍ଦ୍ରହୁଳା ରଙ୍ଗଦେବୀର କରେ ॥
ତୁଙ୍ଗବିଦ୍ୟା ଯନ୍ତ୍ର ବୀଣାନାଦେ ତନୁଦ୍ରବାଇ ।
ବୃନ୍ଦା ନିଜଗଣ ଘେନି ନାନା ସେବା ସେବଇ ॥
ପ୍ରେମପ୍ରଣୟରେ ସହଚରୀ ସେବୀ ସଙ୍ଗରେ ।
ବନ ଭ୍ରମଣ କରନ୍ତି ନାନା କ୍ରୀଡ଼ାରଙ୍ଗରେ ॥
ନଦୀଜଳ ପାର ହୋଇ ପୁଳିନରେ ପ୍ରବେଶ ।
ବନପରିମଳ ମହାଶୋଭା ଦେଖି ହରଷ ॥
କାମରାଜନ ଗୋଟେ ସ୍ଥାନ ଅଜୟ ଗଡ଼ ।
ଘନଗହନ ସ୍ଥାବର ଲତା ନିବିଡ଼ ବାଡ଼ ॥
ଚଉପାଶେ ବେଢ଼ିଅଛି ଜଳ ଯମୁନା ନଦୀ ।
ହର ପୁରନ୍ଦର ଦେବବର ନ ପାରେ ଭେଦି ॥
ସଦା ବସନ୍ତ ସେ ସେନାପତି ସାଜି ସଇନ ।
ଉଚ୍ଛୁଳଇ ବୀରବର ବୀର ନିଶାଣ ଧ୍ୱନି ॥
ପୁଷ୍ପଆୟୁଧ କେଶରହଂସ ଝିଲିକାବାତେ ।
ଗୁରୁ ପାଟଳ ପଟଳ ଶରଶ୍ରେଣୀ ଶୋଭିତେ ॥
ଶୂଳ ଚମ୍ପକ ବକୁଳ ଚନ୍ଦ କଂଶୁକ କାତି ।
ଆଡ଼ଫଢ଼ ଏ ତଗର ମୁଦ୍ଗର ଯୋବତୀ ॥
ନବମାଳିକାଦି ଶରାସନ ଶୋଭା ଅଗସ୍ତି ।
ଗଦା ଖଡ଼ଗ କହ୍ଲର ମୋଦ କୁନ୍ଦ ମାଳତୀ ॥
କୁନ୍ତକରତ କେତକୀ କର ଘଷଣେ ଧୂଳି ।
ଅଛି ବହୁତ ଜାତି ଏରୂପ ବୁଝିବା କଳି ॥
ଚଉପାଶେ ଠଣା ପଡ଼ିହାରି ଅଳିନିକର ।
କାମରାଜା ଜାଗ୍ରତରେ ନିରନ୍ତର ଝଙ୍କାର ॥
କେକୀ କଣ୍ଠଆଳ ଗଡ଼ବୁଲା ପାଳଚେଣ୍ଟୁଆ ।
ଖଗ ମୃଗ ରଥୀ ପଦାତି ଡାହୁକ ଡାକୁଆ ॥

ପିକ ପାରାବତ କପୋତ ଆଦି ଏ ଅମାତ୍ୟ ।
ଶୁକ ପୌରାଣିକ ଧର୍ମବକ ସାଧୁ ପଣ୍ଡିତ ॥
କଣ୍ଡାକାରଣ୍ଡବ କୁମ୍ଭାଟିଆ କାମଦେବଙ୍କ ।
ଲେଙ୍କା ପଡ଼ିହାରୀ ଖଣ୍ଡିଆ ଆସ୍ଥାନପାଳକ ॥
ହଂସ ଚକ୍ରବାକ ସାରସାଦି ସାମନ୍ତ ପାତ୍ର ।
ଧୀର ପବନ ମଳୟ ମନ୍ତ୍ରୀ ସୁସାମନ୍ତ ମିତ୍ର ॥
ଏହି ଅନୁରୂପେ ଶୋଭା ଯେହ୍ନେ ଅନଙ୍ଗରାଏ ।
ଯେହ୍ନ ପୂଜନ ଅକ୍ଷୟ ଗଡ଼େ ଶୁଭେ ବିଜଏ ॥
ଦୁର୍ଗ ଦେଖିଲେଣ ଯୁବାଜନ ବଳ ତୁଟଇ ।
ନିକଟକୁ ଗଲେ ବିବେକ ଧନକୁ ଲୁଟଇ ॥
ନବକଶୋଭା କିଶୋର ସଖୀଗଣ ସଙ୍ଗରେ ।
ସେହି ବନରେ ପ୍ରବେଶ ହେଲେ କେଳିରଙ୍ଗରେ ॥
ନବକାମରାଜା ରାଣୀ ବିଜେ ଜାଣି କାନନେ ।
ଦ୍ୱିଜନକର ମଙ୍ଗଳଧ୍ୱନି ଶୁଭ ବିଧାନେ ॥
ତରୁ ପ୍ରଣତ ଫଳରେ ଲତାପୁଷ୍ପ ବରଷେ ।
ରାଧାକୃଷ୍ଣ ପଦ୍ମପାଦ ପାଇ ସର୍ବେ ହରଷେ ॥
ଅତି ଘଟନ ସୁସଜ୍ଜ ପୁଣ୍ଡ୍ରରାଜ ମଣ୍ଡପ ।
ତଥି ପୀଠରେ ସଜାଇଅଛି କୁସୁମତଳ୍ପ ॥
ପ୍ରିୟା ସୁବେଶ କରିବା ଅର୍ଥେ ବିଜୟେ ତହିଁ ।
ଯେତ୍ନା ସେବା ଯେହ୍ନେ କାମିନୀଏ ଅଛନ୍ତି ରହି ॥
କାନ୍ତ ଅଧୀନ ହୋଇଣ ରସବନ୍ତୀ ଭାଷଇ ।
ମୋତେ ବେଶ କର ପ୍ରାଣନାଥ କୋଳେ ବସାଇ ॥
ଶୁଣି ସାକାଙ୍କ୍ଷ ପୁଣ୍ଡରୀକାକ୍ଷ ସାନନ୍ଦଭରେ ।
ଜାନୁପରେ ପ୍ରିୟା ବସାଇଣ ସୁବେଶ କରେ ॥
ସ୍ନିଗ୍ଧଚିକ୍କଣ ଚିକୁରକେଶ ସାଙ୍ଗୋଇ ଜୁଡ଼ା ।
ଜାତିପୁଷ୍ପଗଭା ମଣ୍ଡି ଖଞ୍ଜି କେତକୀବେଢ଼ା ॥
ମୋତି ସୀମନ୍ତିନୀ ଚନ୍ଦ୍ରୋର୍ମି ତଥି ବିଭାଗେ ।
ଗଙ୍ଗା ସରସ୍ୱତୀ କି ସ୍ତବକିତ କାଳନ୍ଦୀ ସଙ୍ଗେ ॥
ଚୂର୍ଣ୍ଣକୁନ୍ତଳରେ ଖଞ୍ଜି ମୋତିଝରା ଝଲକା ।
ମୁଖପଦ୍ମ ଚନ୍ଦ୍ର ବେଢ଼ି ତାରାବଳୀ ଅଳକା ॥
ଭାଲ ଇନ୍ଦୁରେ ସିନ୍ଦୂରବିନ୍ଦୁ ସୁନ୍ଦର ଦିଶେ ।
ଶଶୀଶରଣ ଅରୁଣ ପଶି ତପନ ତ୍ରାସେ ॥
ଏଣୁ ବିଶେଷରେ ଆହ୍ଲାଦ ଏ ଶୀତକର ।
ନେତ୍ର ଇନ୍ଦୀବର ପ୍ରୀତି କାମ ତପତ୍ତହର ॥

ଖେଳାଖଞ୍ଜନଲୋଚନେ ଦେଲ ଅଞ୍ଜନ ରଞ୍ଜି ।
କିବା ଭ୍ରୂଲତା କୋଦଣ୍ଡେ ଗୁଣ ଚଢ଼ାଇ ମାଜି ॥
ଗଜମୋତି ନାକଚଣା ତିଳଫୁଲ ନାସାରେ ।
ବାମପୁଟେ ହେମରତ୍ନ ପଦ୍ମରାଗ କେଶରେ ॥
ମଲ୍ଲିକଳି ଫୁଲତାଟଙ୍କ ଏ ଭିନ୍ନହାଟକେ ।
କଣଳସ୍ୱ କର୍ଣ୍ଣାଗ୍ରଧୃ କମନୀୟ ଝଟକେ ॥
ଗଣ୍ଡେ ମକର କସ୍ତୁରୀବିନ୍ଦୁ ଚିବୁକେ ଲକ୍ଷି ।
ମୁଖପଦ୍ମଗନ୍ଧେ କୃଷ୍ଣଭୃଙ୍ଗ ରୂପେ କି ରକ୍ଷି ॥
ଚନ୍ଦ୍ର ନିନ୍ଦି ନେତ୍ରେ ଯେ କରନ୍ତି ଅମୃତପାନ ।
ରାଧାମୁଖ ସୁଧାଂଶୁ ମାଧବ ଶୁଦ୍ଧ ଆପ୍ୟାନ ॥
କମ୍ବୁକଣ୍ଠ ହେମଗ୍ରୀବସରୀ ମାଳାନାୟକ ।
ଲମ୍ବେ ମୋତିହାର ହେମମାଳା ନାନା ପଦକ ॥
ମୃଗମଦ ପତ୍ରାବଳୀ କୁଚକୁମ୍ଭରେ ଲକ୍ଷି ।
କାମ ରତିରସେ ଅନୁକୂଳ ମଙ୍ଗଳ ଏହି ॥
ହେମଶିଖରର ପ୍ରାୟେ ଏବେ ଉପମା ଶୋହେ ।
ନଖଚିହ୍ନ ଚନ୍ଦ୍ର ଯେହ୍ନେ କାମ ଲୁଚିଣ ରହେ ॥
ବାହୁମୃଣାଳରେ ତାଡ଼ ବିଦ ମୁଦି କଙ୍କଣ ।
ଚତୁଃସମ ଯେହ୍ନ ଶ୍ରୀକରେ ସର୍ବାଙ୍ଗେ ଲେପନ ॥
କ୍ଷୀଣକଟୀ ଆଣ୍ଠି ପିନ୍ଧେ ଉଣ୍ଡ ଚିନପଟଣୀ ॥
ପରିଧାପନେ ଖଞ୍ଜି ମେଖଳସାର କିଙ୍କିଣୀ ॥
ମଞ୍ଜୁସରୋଜ ଚରଣଯୁଗେ ମଞ୍ଜୀର ଖଞ୍ଜି ।
ମତ୍ତକଳହଂସ ଗଗନକୁ ସୁସ୍ୱର ବାଜି ॥
ପାଦେ ଅଙ୍ଗୁଷ୍ଠି ଝୁଣ୍ଟିଆ ଦେଇ ଯାବକ ଲକ୍ଷି ।
ବେଶ ବଢ଼ାଇ ସୁରତେ ଲୋଭ ଶୋଭାକୁ ଲକ୍ଷି ॥
ପାଶମିଳନେ କୁସୁମମାଳାକାର ପରାଏ ।
ସ୍ନେହଭରେଣ ତାମ୍ବୂଳ ବିମ୍ବାଧରେ ଦିଏ ॥
ବୃନ୍ଦା ଅନେକ ଅଶନ ସଜ୍ଜି କନକପାତ୍ରେ ।
ଦ୍ରବ୍ୟ ପକ୍ୱଫଳ ରସମିଶା ବିବିଧ ଯତ୍ନେ ॥
ଆମ୍ବ ପଣସ ଜାମ୍ବୁ ଜମ୍ବିଳ କମଳା ରମ୍ଭା ।
ବର ଦ୍ରାକ୍ଷା ଖର୍ଜୁର କ୍ଷୀର କେଉଟ ଟଭା ॥
ବେଲ ବକୁଳ ଭରଣ୍ଡ କରମଙ୍ଗା ନାରଙ୍ଗ ।
ବହୁପ୍ରକାରେ ଯେ ବନଫଳ ମନୋଜ୍ଞ ଯୋଗ୍ୟ ॥
ଗଙ୍ଗବାଣ ପ୍ରସ୍ଥଃପେଟୀ ଶ୍ୱେତ ସରସ ଇକ୍ଷୁ ।
ଅଦା ନଡ଼ିଆପାଚି ତିନ୍ତୁଡ଼ି ଜମ୍ବିଳ କକ୍ଷୁ ॥

କନ୍ଦା କନ୍ଦମୂଳ ନାନା ଫଳରସେ ପ୍ରଧାନ ।
ଚର୍ବ୍ୟ ପେୟ ଲେହ୍ୟ ଆଦି ପ୍ରକାର ସୁଭୋଜନ ॥
ଘନସାର ଜାତିଫଳ ଅଳାଇଚ ଲବଙ୍ଗ ।
ଚୂର୍ଣ୍ଣ ମରିଚମିଶ୍ରିତ ଯେତୁ ଯହିଁକି ଯୋଗ୍ୟ ॥
ହେମବର୍ଣ୍ଣ ସାଗପାନ ବଡ଼ା ଯେ ବିଧି ବାନ୍ଧି ।
ବୃନ୍ଦା ଯତନେ ରଞ୍ଜ ପୁଳନବନେ ଉପାଧି ॥
ସୁରୁଁ ଆଣିଥିଲେ ରାଈ ପକ୍ୱଅନ୍ନ ସମ୍ପାଦି ।
ସ୍ୱାଦୁ ସଉରଭ ଘୃତପକ୍ୱ ଅନେକ ବିଧି ॥
କ୍ଷୀରବହୁଳ ରସାଳ ଦଧି ତଥିମିଶ୍ରିତା ।
ଖଣ୍ଡ କର୍ପୂର ସଂଯୋଗେ ସିଖରଣି ବୋଲିତା ॥
ସର ଗୋଟିକା ଅଧାମ ଚମ୍ପା ଦଧି ତଗର ।
ସର ବହୁଳସର ପାପୁଡ଼ି ଲବଣିସର ॥
ଛେନାଲଡ଼ୁ ଦୁଧଲଡ଼ୁ ଦଧିଲଡ଼ୁ ପାୟସ ।
ଖଣ୍ଡକର୍ପୂର ମରିଚ ପାକେ ନଡ଼ିଆ ରସ ॥
ପୟଃ ପାଳୁଅ ମରିଚ ସାଚ ଶାକର ମିଶି ।
ମାଷତଣ୍ଡୁଳ ଲଡ଼ୁ କୃଷ୍ଣ ମନକୁ ତୋଷି ॥
ନାରିକେଳ ରସସାର ସାଚ ନବାତ ପାକେ ।
ସର କର୍ପୂର ମରିଚ ମିଶି ଅମୃତାଧିକେ ॥
ଖଇ ସଙ୍ଗେ ପୟଃତାଳ ନେଇ ନଡ଼ିଆପାଡି ।
ଖଣ୍ଡକର୍ପୂର ମରିଚ ଜଡ଼ି ପୀରତି ଅତି ॥
ଘୃତପୂର ସରପୂର ଥିଲ ଅମୃତକେଳି ।
ହଂସକେଳି ପାରିଜାତ କୃଷ୍ଣ ମନକୁ ହରି ॥
ଏହିରୂପେଣ ଅନେକ ପକ୍ୱଘୃତ ଅଶନ ।
କୃଷ୍ଣ ଭୋଜନ ନିମିତ୍ତ ବିଜେ ହେମ ଆସନ ॥
ହେମଝାରିରେ ସୁବାସ ଜଳ ଦକ୍ଷିଣ ପାଶେ ।
ହେମପାତ୍ରେ ହେମଗାତ୍ରୀ ହରଷରେ ପରଶେ ॥
ପ୍ରିୟା ଅନୁଭବେ ହାସ କଉତୁକେ ଭୋଜନ ।
ସ୍ୱାଦ ସଉରଭେ ପ୍ରଶଂସନ୍ତି ଧନ୍ୟ ଏ ଧନ୍ୟ ॥
ସର୍ବ ଦ୍ରବ୍ୟରୁ ଯେ ଅଧେ ଅଧେ ରହଇ ଶେଷ ।
ପୂର୍ଣ୍ଣ ଅମୃତ ଭୋଜନେ କୃଷ୍ଣଚନ୍ଦ୍ର ହରଷ ॥
ବାସଜଳେ ଆଚମନ-ମୁଖ ମାର୍ଜ ବସନେ ।
ଶତପଦାନ୍ତରେ ଭୁଲ ଅପସର ଆସନେ ॥
ସୁଷ୍ଠେ ବସି ତହିଁ କର୍ପୂର ବିଡ଼ିଆ ମନୋହର ।
ଏଥିଅନନ୍ତରେ ସକଳ ସଖୀ ସଙ୍ଗରେ ରାଈ ॥
ବୃନ୍ଦାଉପାଧି ସାମଗ୍ରୀ ଯେତେ କ୍ରମେ ପରଶେ ।
ବସି ଭୋଜନ କରନ୍ତି ସର୍ବେ ମନହରଷେ ॥
କୃଷ୍ଣ ଅବଶେଷ ରାଈ ପାନ କେବଳ କରେ ।
ଷଡ଼ରସରେ ସକଳ ସଖୀ ଉଦର ଭରେ ॥
ଆଚମନ ବଢ଼ାଇଣ ଚଳେ କୃଷ୍ଣ ନିକଟେ ।
ସେବାପରି ସଖୀ ଯେଝା ସେବା ଯେବଣ ଖଟେ ॥
କୃଷ୍ଣ କୋଳ କରି ନେଇ ପ୍ରିୟା କୋଳେ ବସାଇ ।
ସଖୀ ଲେପନ୍ତି ଚନ୍ଦନରେ କର୍ପୂର ମିଶାଇ ॥
କ୍ଷଣେ ବିଶ୍ରମିଣ ତହିଁ ବନଶୋଭା ଦେଖନ୍ତି ।
ଚନ୍ଦ୍ରଦୀପ ହୁଳା ଧରି ଚଉପାଶେ ସ୍ଥିବଷ୍ଟି ॥
ଜଳ ମଧ୍ୟେ ଝଲଝଲ ଦିଶେ ଜ୍ୱଳନଜାଳ ।
କୃଷ୍ଣ ବୋଲେ ପ୍ରିୟେ ଦେଖ ଜଳେ ଜ୍ୱଳେ ଅନଳ ।
ବୋଲେ ଲଳିତା ଭୋନାଥ କୁମ୍ଭଲବଣ୍ୟେ ଗୃହିଁ ।
ସୂର୍ଯ୍ୟତନୟା ହୃଦରେ କାମ ଅନଳ ଦହି ॥
ଏଣୁ କୂଳ ଲଙ୍ଘି ଆମ୍ଭ ପ୍ରାୟ ସ୍ଥକତେ ରହେ ।
ନେତ୍ର ଇନ୍ଦୀବର ନିରେକ୍ଷିଣ କମ୍ପିତକାୟେ ॥
ବୋଲେ ବିଶାଖା ଭୋ କାନ୍ତ ସଙ୍ଗଲବଧୂ ଘୁଞ୍ଚ ।
କାମଅଗ୍ନି ଜଳୁଅଛି ଯମଭରେସ ଲୁଚ ॥
ଟାକ ବିଚ୍ଛେଦ ସମୟ ଏହିରୂପେ ଦହିବ ।
ଏହିରୂପେ ଝଲକଲେ ହୃଦେ କେହୁ ସହିବ ॥
ଚିତ୍ରା କହେ ଗୃହିଁ ଚନ୍ଦ୍ରୁସଙ୍କ ଚିତ୍ତ ଚମକେ ।
ଚନ୍ଦ୍ରହାସ ଖଡ଼୍‌ଗକୁ ଧରି କାମ ଝମକେ ॥
କହେ ଚମ୍ପକଲତା ଯମୁନା ଅନୁରାଗରେ ।
ନବ ପ୍ରେମଲତାବଲ୍ଲୀ ପୂରେ ହୃଦବାଗରେ ॥
ବୋଇଲ ସୁଦେବୀ କାଳନ୍ଦୀ ସପତ୍ନୀ ଆମ୍ଭର ।
ଅନ୍ୟେ ମାନେ ଅଗ୍ନି ଜାଳେ ସଙ୍ଗ ଦେଖି ତୁମ୍ଭର ॥
ରଙ୍ଗଦେବୀ ଜାଣେ ତାର ପାଶେ ବିହାର ଜାଣି ।
ମୂର୍ତ୍ତିମନ୍ତେ ଧୂଳ ଧରି ସେବେ ଭାନୁଦୁଲାଳୀ ॥
ତୁଙ୍ଗବିଦ୍ୟା କହେ ନଦୀ ବୀଣାବାଦନେ ମଣି ।
ବେଣୁପାଣେ ଚନ୍ଦ୍ର ଚନ୍ଦ୍ରବାଳା ତୁମ୍ଭି ଏ ଜାଣି ॥
ଜ୍ୟୋତ୍ସ୍ନାମୟୀ ଗୁଣ ଜ୍ୟୋତି ଝଟକଇ ସଂସାରେ ।
ସାର ମାର ସେ ମଧୁରଧ୍ୱନି ଭୃଙ୍ଗ ଝଙ୍କାରେ ।
ଚନ୍ଦ୍ରରେଖା କହେ ଶ୍ୟାମଘନେ ହେମବରମା ।
ଦେଖି ପଳାଇ ଯମୁନା ପଶି ସଉଦାମିନୀ ॥

ଲହେ ଚଞ୍ଚଳ ତରଙ୍ଗ ରଙ୍ଗେ ଜ୍ୟୋତି ପ୍ରକାଶେ ।
ଅଷ୍ଟସଜନୀ ଛଳବା ବାଣୀ ଶୁଣି ହରଷେ ॥
ବୃନ୍ଦା କହେ ଘୋର ପୁଳନରେ ଦେଖ ଦମ୍ପତି ।
ହାସ କଳରବ ହୁଳହୁଳି କରେ ଆଳତି ॥
ରାଧା ବୋଲନ୍ତି ହେ ବନ୍ଧୁ କର ଅନୁସନ୍ଧାନ ।
ଏହୁ କପଟନାୟକ ଅନୁରାଗ ବିଧାନ ॥
ସମୀପରେ ଥିଲେ ପ୍ରୀତି ଯେମନ୍ତେ ବିକଶୁଥାଇ ।
କିନ୍ତୁ ଅନ୍ତର ହୋଇଲେ ସେହି ସଙ୍ଗତେ ଯାଇ ॥
ପ୍ରିୟା ଇଙ୍ଗିତବଚନେ ପୁଣ ଛଳେ ମାଧବ ।
ରାଧେ ପଦ୍ମିନୀକୋଳରେ ଭୃଙ୍ଗ ଭୁଜଙ୍ଗଧବ ॥
ସୂର୍ଯ୍ୟଭକତା ବୋଲଣ ସର୍ବେ ଭୁବନେ କହେ ।
ତେଣୁ କୁମୁଦିନୀ ହାସ୍ୟ କରେ ଦେଖ ହେ ପ୍ରିୟେ ॥
ନାଥ ପଦ୍ମିନୀର ପ୍ରତି ଭୃଙ୍ଗ ସୁଖଦାୟକ ।
ଶଠପ୍ରୀତି ବନ୍ଧୁ ମଧୁ ପାନ କରେ ନାୟକ ॥
ଉନମତ୍ତେ ନିଦ୍ରାଗତ ରହେ ପଦ୍ମିନୀ କୋଳେ ।
ସଖୀ ଉନ୍ନିଦ୍ର କୁମୁଦ ଜାଗି ଏ ନିଶାକାଳେ ॥
ପ୍ରାଣପ୍ରିୟେ ଦେଖ ପୁଷ୍ପବନ୍ତ ନଦୀ ଯମୁନା ।
କୂଳ ଲେଙ୍ଘି ସିନ୍ଧୁ ସଙ୍ଗ ଇଚ୍ଛି ଶୀଘ୍ର ଗମନା ॥
ନାଥ ପତି ହୃଦେ ବହେ ଯେଣୁ ବଡ଼ବାନଳ ।
ପୁଷ୍ପବନ୍ତ ତେଣୁ ଶୀଘ୍ର ଚଳି କରେ ଶୀତଳ ॥
ରାଧେ ଦେଖ ଏ ଲବଙ୍ଗଲତା ପୁନ୍ନାଗ ଗଛ ।
ନବକୁମାରୀ ଆଗେ ଉତ୍ତମ ପୁରୁଷ ଇଚ୍ଛେ ॥
ଆହେ ପ୍ରାଣନାଥ ପତିବ୍ରତା ଏହାକୁ କହି ।
ସ୍ୱୟମ୍ବର ବର ଅନ୍ୟ ପୁରୁଷକୁ ନ ଛୁଇଁ ॥
ପ୍ରିୟେ ସୁନାର କଣ୍ଟପୀ ଶୋଭା ସୁବର୍ଣ୍ଣ ଫୁଲେ ।
ଫଳ ଫଳିଲେ ଅଯୋଗ୍ୟ ଭୋଗ୍ୟ ନୁହେ ଶଇଲେ ॥
ରାଣି କହେ କଣ୍ଟପୀରେ ଯେଣୁ ନିଅଗ୍ନି ହେଲେ ।
ଏଣୁ କଣ୍ଟପୀ ହୋଇଲେ ଆତ୍ମେ ପଥିକ କଲେ ॥
ରାଧେ ଦେଖ ଦେଖ ବନମଲ୍ଲୀ ସୈମୁଲ ସଙ୍ଗ ।
ଏବେ ପ୍ରେମାଙ୍କୁରେ ତମାଳରେ ସମର୍ପେ ଅଙ୍ଗ ॥
ଶୁଣି କାନ୍ତେ ରସବନ୍ତ ପ୍ରୀତିବଚନ ଭାଷେ ।
ଯେମନ୍ତେ ପଦ୍ମିନୀ ତରୁଣୀ ବଞ୍ଚେ ନିଜନିବାସେ ॥
ପୁଷ୍ପ ସମ୍ପୁଟରେ ନିଜ କାନ୍ତ ସଙ୍ଗେ ବିହାରେ ।
ଯେହୁ ଯାହାର ସେ ଯୋଗାମିଳେ କାଳବେଳରେ ॥

ଚହୁଁ ଦେଖେ ନାଗେଶ୍ୱର ଫୁଲେ ଅଳି ବସିଛି ।
କୃଷ୍ଣ ବୋଲେ ପ୍ରିୟେ କେମନ୍ତେ ଏ ଶୋଭା ଦଶୁଛି ॥
ରାଣି କହଇ କଣ୍ଟପକାନ୍ତ ପଦ୍ମିନୀ ମୁଞ୍ଜ ।
ଯେଉଁ ପ୍ରକାରେ ଗଣିକା ରସେ ରଜନୀ ବଞ୍ଚ ॥
ପୁଣ କହେ ହରି ଅଟେଟି ଏ ପୁଷ୍ପ ସଜନ ।
ଚନ୍ଦ୍ର ସମୟେ ଉଦୟେ ପାଏ ଶୋଭା ରଜନୀ ॥
ରାଣି କହେ ଚନ୍ଦ୍ରାବଳୀ ପ୍ରୀତି ଅନ୍ତେ ବିକଶେ ।
ଦେଖ ଏହି କୁସୁମକୁ ସେହି ପ୍ରାୟୁ ଆଶ୍ରସେ ॥
ଭୃଙ୍ଗ ଆତପାତ ଧ୍ୱନି ଏହୁ ଗୂଢ଼ ବଚନ ।
ନିଜ ସ୍ୱରୂପ ଦେଖିଣ ତେଣୁ ପ୍ରସନ୍ନ ମନ ॥
ଶୁଣି କମ୍ପମାନ ହୋଇ କୋଳେ ଲଗାଇ ରାଣି ।
ଧରି ଚଟୁଳ ଚିବୁକ ଗୂଢ଼ବଚନ କହି ॥
ସଖୀ ଜନମଦରିଦ୍ର ଯେମନ୍ତେ ପାଇ ରତନ ।
ଲୋକେ ଲୁଚାଇଣ ସଞ୍ଚାଇ କରି ଯତନ ॥
ପଦ୍ମପାଦପାଣି ପଦ୍ମୋଦରୀ ପଦ୍ମଯୌବନୀ ।
ପଦ୍ମଧାରଣୀ ସୁପଦ୍ମା ପଦ୍ମନାଭ ଭାବିନୀ ॥
ଶ୍ୟାମା ନବୀନା ସୁମନା ଶ୍ୟାମେ ଅନୁରାଗିଣୀ ।
ଶ୍ୟାମବସନୀ ଭୂଷଣୀ ଶ୍ୟାମ ସଉଭାଗିଣୀ ॥
ଶ୍ୟାମବିନୋଦିନୀ ଶ୍ୟାମ ନାମ ଗୁଣବାଦିନୀ ।
ଶ୍ୟାମରଞ୍ଜିନୀ ଶ୍ୟାମମୋହିନୀ ଶ୍ୟାମମୋହିନୀ ॥
ମହାଭାବ ସ୍ୱରୂପିଣୀ ବିଶ୍ୱଆହ୍ଲାଦିନୀ ।
ହରିହୃଦୟାସନୀ ଗୋକୁଳ ପୁରବନ୍ଦନୀ ॥
ମହାମଣ୍ଡନୀ ଦୁଃଖଖଣ୍ଡିନୀ ସୁଖଦାୟିନୀ ।
ଜୟ ଜୟ ରାଧେ ପୁରେ ଚଳ ଥାଉ ରଜନୀ ॥
ଶୁକ ଭଣେ ଜୟ ନବଘନ ଶ୍ୟାମସୁନ୍ଦର ।
ନବତରୁଣୀ ଚିତ୍ତଚୋରକ ତୃଷାକୁ ହର ॥
ନବଅଭିସାରୀ ନାଗରୀ ସୁଖ ସଦନ ।
ମୃଦୁମଧୁରମୁରଳୀ ଅଭିନବମଦନ ॥
ଜୟ ଆଜାନୁପ୍ରଲମ୍ବ ଭୁଜ କରିକରଭ ।
ରାଧା ପଦ୍ମିନୀ ଆବୃତ ଶୋଭା ଅତି ଦୁର୍ଲ୍ଲଭ ॥
ନବଚନ୍ଦ୍ର ମାଳମଣି ତନୁ ଶୋଭାକନ୍ଦର ।
କୁଳବଧୂ ସତୀପୟୋଧି ମନ୍ଥନେ ମନ୍ଦର ॥
ଜୟ ରାଧାପ୍ରାଣବନ୍ଧୁ ସୃଷ୍ଟିବର୍ଦ୍ଧନ ।
ନିଶି ଶେଷ ହେଲା ଚଳ ବେଗେ ନିଜ ସଦନ ॥

ରତି ଆଗମେ ରଜନୀ କାନ୍ତ ସଙ୍ଗ ତେଜଇ ।
ଚନ୍ଦ୍ରକିରଣ ମଳିନ ତାରା ଛବି ଲଭଇ ॥
ରାଧାକୃଷ୍ଣ ଶୁଣି ଚେତ ନିଦ୍ରାଳସ୍ୟ ନୟନେ ।
ବେନି ଏକଅଙ୍ଗ ନିବିଡ଼ରେ ସୁଖଶୟନେ ॥
ବହୁ ପକ୍ଷୀ କୋଳାହଳ ଶୁଣି ସଖୀ କାତର ।
ବେଗେ ଶଯ୍ୟା ତେଜି ମିଳେ କୁଞ୍ଜଗୃହ ଭିତର ॥
ପୁଷ୍ପାବଳୀ ଲତାଜାଲ ଗବାକ୍ଷରେ ନିରେଖ ।
ସୁଖ ବଢ଼େ ରାଧାକୃଷ୍ଣ ଦେଖି କୁସୁମ ତଳ୍ପେ ॥
ମୁଖେ ମୁଖ ଲଗାଇଣ ପାଦ ପାଦରେ ଛନ୍ଦ ।
ଭୁଜେ ଭୁଜେଣ ବନ୍ଧନ ଉରୁ ଉରୁରେ ଲନ୍ଧ ॥
ନବଘନ କୋଳେ ସ୍ଥକିତ କି ସଉଦାମିନୀ ।
ନବନାଗର ଅଙ୍ଗରେ ଶୋଭା ନବକାମିନୀ ॥
ଭାଗ୍ୟବଳେ ସେହ୍ନ ଚିନ୍ତାମଣି ଲଭଇ ଯେବେ ।
ଆଉ ରତନେ ଆଦର ତାର ନ ରହେ ତେବେ ॥
ଯେତେବେଳଯାଏ ନୋହିଥିଲା ଅମୃତ ପାନ ।
ତେତେବେଳଯାଏ ରୁଚି ହୋଇଥିଲା ଅଶନ ॥
ବୃନ୍ଦା କହେ ବ୍ରଜଚନ୍ଦ୍ର ନଭଚନ୍ଦ୍ର ଏ ଏକ ।
ପୂରେ ପୂରେ ପଶି ଭୋଗ୍ୟକରେ କନ୍ୟା ଅନେକ ॥
ରାଜା ସଂଯୋଗେଣ ପୂର୍ଣ୍ଣୋତ୍ତମ ଅଘ୍ରଣମାସ ।
ନାମ ବହଇ ମାଧବ ରାଧା ସବୁ ବିଶେଷ ॥
ବୃଷଭାନୁ ତନୁଜାର ବିନୁ କାହ୍ନୁ ନ ଶୋହେ ।
ଯେହ୍ନେ ଚନ୍ଦ୍ରମା ରଜନୀ ବିନା ଶୋଭା ନ ପାଏ ॥
ନାନାରସେ ଛଳ ହାସକଉତୁକ ଇଙ୍ଗିତେ ।
ରାତ୍ରି ପକ୍ଷେ ସଖୀ କୃଷ୍ଣେ ରସବଚନାମୃତେ ॥
ନିଭୃତରେ ରାଧାକୃଷ୍ଣ ବେନି ରତିରସରେ ।
କୁଞ୍ଜେ କୁଞ୍ଜେ କୃଷ୍ଣ ବହୁରୂପେ ସଖୀ ସଙ୍ଗରେ ॥
ନବସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ଯୁବା ଧୀର ଲଳିତ ।
କାମକ୍ରୀଡ଼ା ଚରିତରେ ଚିତ୍ତ ଅନୁରତ ॥
ସର୍ବଗୁଣେ ପରିପୂର୍ଣ୍ଣ ଗୋପଚତୁରୀବୃନ୍ଦ ।
କୃଷ୍ଣ ରାତ୍ରି ସଙ୍ଗ ପାଇ ଏକେ ଏକେ ସାନନ୍ଦ ॥
ଏମନ୍ତରେଣ ରଜନୀ ନିବିଡ଼ର ଶେଷେ ।
ରାଧାକୃଷ୍ଣ ତେଜି ପୁଷ୍ପଶେଯେ ନିଦ୍ରା ଆଳସ୍ୟେ ॥
ଅଷ୍ଟଦିଗ କୋଣେ ସଖୀଗଣ ପାହାରି ଜଗେ ।
ସନ୍ନିଧିରେଣ ମଞ୍ଜରୀଗଣ ସେବା ସଂଯୋଗେ ॥

ଏମନ୍ତେଣ ନିଦ୍ରା ମହାନିଶା ଛଦଣ୍ଡ ଗଲା ।
ବୃନ୍ଦା ତରସ୍ତଚିତ୍ତରେ ଯହୁଁ ନିଶାନ୍ତ ହେଲା ॥
ରାଧାକୃଷ୍ଣ ଜାଗ୍ରତକୁ ସାରିଶୁକେ ଜଣାଇ ।
ପଦ୍ୟାବଳୀ ପଢ଼ି ମହୁଦରେ ନିଦ୍ରା ଭଙ୍ଗାଇ ॥
ସାରି ଭାଷେ ଜୟ ଜୟ ବୃଷଭାନୁକୁମାରୀ ।
ଜୟ ଗାନ୍ଧର୍ବିକେ ନବ ଗୋରଚନା ଗଉରୀ ॥
ବୃନ୍ଦାବନେଶ୍ୱରୀ ଗୁଣମୟୀ କୃଷ୍ଣବଲ୍ଲଭେ ।
ପତିବ୍ରତା ପ୍ରିୟବର୍ଗ ସର୍ବ ମଧ୍ୟେ ଦୁର୍ଲ୍ଲଭେ ॥
ଜାତି ପଦ୍ମିନୀ ପଦ୍ମଆସନୀ ପଦ୍ମବାସିନୀ ।
ପଦ୍ମବଦନୀ ପଦ୍ମନୟନୀ ପଦ୍ମହାସିନୀ ॥
ଏମନ୍ତେଣ ନିଦ୍ରା ତେଜି ପୁଷ୍ପପଲଙ୍କେ ବସି ।
ହାଇ ଘନ ଘନ ବାହାଟୋଳ ତନୁ ଆଳସୀ ॥
କୃଷ୍ଣ ବେନି ପାରୁଶେ ଅଳତା ଚିହ୍ନକୁ ଦେଖି ।
ନେତ୍ରଅନ୍ତେ ଠାରିଠାରି ଏକ ଆରକ ସଖୀ ॥
ମନ୍ଦ ମନ୍ଦହାସେ ବାସେ ଆଚ୍ଛାଦିଣ ବଦନ ।
ହା ହା କେବଣ ଅବସ୍ଥା ନ କରଇ ମଦନ ॥
ଜାଣି ସଲଜ୍ଜେ ରାଧିକା ମୁଖ ତଳକୁ କରି ।
ଦେଖି ନାଗର ରସିକ ହସେ ମଧୁର କରି ॥
ଯେଝାସେବା ଘେନି ସଖୀମାନେ ଅଛନ୍ତିପାଶେ ।
ଛାଡ଼ି ନ ବଞ୍ଚଇ ବେନି ମନ ପ୍ରେମଲାଳସେ ॥
ବୃକ୍ଷେ କକ୍‌ଖଟି ବାନରୀ ଡାକେ ଜଟିଳା ଆସେ
ଶୁଣି ସଙ୍କୁଚିତେ ସଚକିତେ ସକଳେ ହାସେ ॥
ହାରମାଳା ଗନ୍ଧପାନ ଆଦି ଘେନି ଯେଝାରେ ।
ବେନି କର ଧରାଧରି ମିଳି କୁଞ୍ଜ ବାହାରେ ॥
ପଥଜନ ବଞ୍ଚି ନିଜ ପୁରେ ପ୍ରବେଶ ହେଲେ ।
ନିଜ ନିଜ ପଲଙ୍କରେ ଯାଇ ଶୟନ କଲେ ॥
ଏମନ୍ତେଣ ପ୍ରାତଃକାଳେ ପୌର୍ଣ୍ଣମାସୀ ଆଗମ ।
ଦେଖି ନନ୍ଦରାଣୀ ବିନୟରେ ପାଦେ ପ୍ରଣାମ ॥
ଦେବୀ ଆଶୀର୍ବାଦ କରି ସର୍ବଶୁଭକୁ ପୁଚ୍ଛି ।
ପରିଜନେ ପ୍ରତିପାଳୁଛୁ ମା ଏକଇ ବଞ୍ଚି ॥
ମା କେବାଳନ୍ତି ସର୍ବଶୁଭ ଏକା ତାହାରି ଚିନ୍ତା ।
ବନେ ଗୋଧନ ରଖି ଦୁର୍ବଳ କଂସ ଅହନ୍ତା ॥
ଅନୁକ୍ଷଣେ ଖେଳ ବିନୋଦରେ ବାଳକ ସଙ୍ଗେ ।
ଖରା ବରଷା ଶୀତ ଦୁଃଖକୁ ଘେନଇ ଅଙ୍ଗେ ॥

ଯେତେ ଯତନେ ରନ୍ଧନ କଲେ କିଛି ନ ରୁଚେ ।
ଗାବ ରଖିଆଳ ଷୀଣ ତନୁ କେମନ୍ତେ ବଞ୍ଚି ॥
ପୃଷ୍ଠଦେଶରେ ଉଦର ଲାଗେ ଦୁର୍ବଳ କାୟ ।
ଫଙ୍କ ଦେଲେ ପଡ଼ିଯିବ କି କରିବ ଉପାୟ ॥
ଦେବୀବୋଲେ ନନ୍ଦ କରେ ଯେ ବିଷ୍ଣୁ ଆରାଧନ ।
ସେହି ପୁଣ୍ୟବଳେ ପୁତ୍ର ଜଗତରେ ବର୍ଦ୍ଧନ ॥
ପୂର୍ବେ ଦୁର୍ବାସାର ବରେ ବୃଷଭାନୁ ନନ୍ଦିନୀ ।
ପାକଭୋଜନେ ବଳିଷ୍ଠ ପୁଷ୍ଟ ଯଶବର୍ଦ୍ଧିନୀ ॥
ତାଙ୍କୁ ପୁରେ ଆଣି ରନ୍ଧନ କରିଣ ଭୁଞ୍ଜାଅ ।
କୃଷ୍ଣ ମନ ରୁଚି ହେବ ଜଟିଳାକୁ ମଗାଅ ॥
ଗୃହ ପୁତ୍ରକୁ ଦେଖିବା ବୋଲି ଶୟନଆଳେ ।
ଯଶୋବନ୍ତୀ ଘେନି ପୌର୍ଣ୍ଣମାସୀ ପ୍ରବେଶ ହେଲେ ॥
ଦ୍ୱାର କବାଟ ଘୁଞ୍ଚାଇ ବେନି ଭିତରେ ପଶି ।
ଶ୍ୟାମ ପଲଙ୍କେ ବସିଣ ଅଙ୍ଗ କରେ ଆଉଁସି ॥
ମାଏ ବୋଲନ୍ତି ହେ ଉଠ ଉଠ ରଙ୍କୁଣୀଧନ ।
ନୀଳବଦନ ନିରେଖି ସୁଖୀ ହେଉ ନୟନ ॥
ପୌର୍ଣ୍ଣମାସୀ ବିଜେକଲେ ତୋତେ କଲ୍ୟାଣ କରି ।
ସଙ୍ଗପୁଏ ଅଗଣାରେ ବସିଅଛନ୍ତି ମୂରି ॥
ବନ ଭ୍ରମଣ ଶ୍ରମରେ ଦେଖ ନିଦ୍ରା ଘାରଇ ।
ପ୍ରାତଃକାଳ ଶୟନରେ ଆୟୁବଳ ହରଇ ॥
ନାନାଧାତୁ ଚିତ୍ର ଲଗି ଅଙ୍ଗ କଣ୍ଟକେ କ୍ଷତ ।
କହୁଁ କହୁଁ ନେତ୍ରୁଁ ନୀର ସ୍ତନୁ କ୍ଷୀର ସ୍ରବତ ॥
କୃଷ୍ଣ ଜନନୀ ବଚନ ଶୁଣି ଜାଗ୍ରତେ ଉଠି ।
ହାଇମାରି ଅଙ୍ଗ ମୋଡ଼ି ଉର୍ଦ୍ଧ୍ୱେ ଛନ୍ଦି ଅଙ୍ଗୁଷ୍ଠି ॥
ପୌର୍ଣ୍ଣମାସୀ ଭଗବତୀ ମାତା ଚରଣେ ନମି ।
କେଶ ସାଉଁଳି ଯତନେ ମାଏ ବଦନ ଚୁମ୍ବି ॥
ଶୋକଗଦଗଦେ ପୁତ୍ର ଅଙ୍ଗ ଆଉଁସି ବୋଲି ।
ବଡ଼ ଦୁର୍ବଳ ଲାଗୁଛି ତନୁ ମୁଁ ତ ନ ମଲି ॥
ଗାବ ରଖି ଖନପାକ ବନେ ବନେ ବୁଲଇ ।
ଏକଇର ସୁତ ମାତା ପ୍ରାଣ କେହ୍ନେ ଧରଇ ॥
ଏମନ୍ତେଣ ମଧୁମଙ୍ଗଳ ସୁବଳ ମିଳିଲେ ।
କୃଷ୍ଣଦର୍ଶନ ଲାଳସେ ସବୁ ପୁଏ ଚଳିଲେ ॥
ଦାସ ସାରଙ୍ଗ ରକ୍ତକଆଦି ସେବା ସେବିଲେ ।
ରତ୍ନଝରି ସୁବାସିତ ଜଳେ ମୁଖ ପଖାଳେ ॥

ନିଜବାସେ ମୁଖ ମାଜି ବସିଲେ ପୁରି ଅଙ୍ଗନ ।
ସଖା ସେବକ ଯେ ସଙ୍ଗେ ବେଢ଼ି ସକଳଜଣ ॥
ଗୋଶାଳାରେ ଗୋଦୋହନେ ଯାଇ ପ୍ରବେଶ ହେଲେ ।
ବତ୍ସ ମେଳିଣ ଏକଆରକେ ଦୋହନ କଲେ ॥
ଗଙ୍ଗା ଯମୁନା ଗୋଦାବରୀ ନର୍ମଦା କପିଳା ।
କାଳୀ ଶ୍ୟାମଳୀ ଧବଳୀ ନୀଳା କାଞ୍ଚନ ମାଳା ॥
ସେଷ୍ଟା ନାମଧରି ଗାବ ବତ୍ସା ପିଆଇ ଲେହି ।
ବତ୍ସ ବାନ୍ଧି ଛନ୍ଦ ବସି ଆଣ୍ଠୁ ଦୁହୁଁଣେ ଦୁହିଁ ॥
ଘନ ଘନ ଗରଜନ ସେ ଗୋଦୋହନ କାଳେ ।
ଏଣେ ପୌର୍ଣ୍ଣମାସୀ ଯଶୋଦାଙ୍କୁ ପ୍ରବୋଧି ଚଳେ ॥
ପୁତ୍ରଗାତ୍ର ବପୁ ପୁଷ୍ଟ ହେବା ଚିନ୍ତା ଜନନୀ ।
ପୁରେ କେମନ୍ତେ ଆଣିବ ବୃଷଭାନୁ ନନ୍ଦିନୀ ॥
ପୂର୍ବେ ମୋତେ ଯେ ଦୁର୍ବାସା କହିଥିଲେ ଏ ବୁଦ୍ଧି ।
ରାଧା ପାକ ଭକ୍ଷଣରେ ଯଶ ଆୟୁଷ ବୃଦ୍ଧି ॥
ଗ୍ରହଚେଷ୍ଟା ଘୋରବନେ ଦୁଷ୍ଟଜୀବ ନିର୍ଭୟେ ।
କେଉଁ ପ୍ରକାରେ ଆଣିବ ରାଈ କସ ଉପାୟେ ॥
ସୁଲକ୍ଷଣୀ ଶିରୋମଣି ନାରୀକୁଳରେ ଧନ୍ୟା ।
ମୋର କୃଷ୍ଣଙ୍କୁ ମିଳିବ ଯେବେ ଏମନ୍ତ କନ୍ୟା ॥
ଶାଶୁ ଜଟିଳା ଯତନେ ଜଗି ପୁରେ ରଖାଇ ।
ଚନ୍ଦ୍ର ସୂର୍ଯ୍ୟଙ୍କୁ ନ ହୁଏ ଯାର ଛାଇ ଦେଖାଇ ॥
ପର ଘର ରନ୍ଧନକୁ ସେ କେମନ୍ତେ ଆସିବେ ।
ଗୋପେ ଶୁଣିଲେ ଯେ ମୋତେ ହାସ୍ୟ କରି ହସିବେ ॥
ମୋର ଭରସା ତ ହେଉନାହିଁ ଏମନ୍ତ କହି ।
ଯେବେ ନ ଆଣିବ ତେବେ ପୁଣି ପୁତ୍ର ଯେ ନୋହି ॥
ଅସମ୍ଭବ ଉଦବେଗ ମୋତେ ଦଇବ ଦେଲା ।
ଏତେ କହି ନେତ୍ର ଲୋତକରେ ପୂରିତ ହେଲା ॥
ଦେଖି ଯଶୋଦା ବିଷାଦ ତହିଁ ଧନିଷ୍ଠା କହି ।
ଅଛି କାରଣ ତୁମ୍ଭର ପୁରେ ଆସିବେ ରାଈ ॥
ତୁମ୍ଭ ବଧୂ କୁନ୍ଦଲତା ଏ ସୁଭଦ୍ରା ବନିତା ।
ବାଳିକାଙ୍କ ବଡ଼ ପ୍ରୀତି ବୃଷଭାନୁଦୁହିତା ॥
ଶାଶୁ ଜଟିଳା ତାଙ୍କର ଏହାଠାରେ ବିଶ୍ୱାସ ।
ତୁମ୍ଭ ନାମ ଧରି କହିଲେ ପେଷିବେ ଅବଶ୍ୟ ॥
ସୂର୍ଯ୍ୟପୂଜାରେ ଯେ ବିପ୍ରଶର୍ମା ବରଣ କଲେ ।
ଶାଶୁ ଥାଇ ବଧୂ ଟାଳି ଉଦ୍ଭିଜବା ଛନ୍ଦିଲେ ॥

ବିପ୍ର କହିଲେ ଏ ମହାସତୀ ସାଧିବୀ ବାଳା ।
ସର୍ବସୁଲକ୍ଷଣୀ ହୋଇବ ଏ ଗର୍ଭ ସଫଳା ॥
ଶୁଣି ଜଟିଳା ଆଶ୍ଚର୍ଯ୍ୟ ପାଦେ ଭଗତି ହୋଇ ।
କୁଳରକ୍ଷିବ କେମନ୍ତେ ମୋତେ କହ ଗୋସାଇଁ ॥
ବିପ୍ର କହେ ବ୍ରଜେଶ୍ୱରୀ ସେବିବ କରେ ସଦୟେ ।
ଚିନ୍ତାମଣି ପଦପଦ୍ମରେ ସର୍ବସିଦ୍ଧି ହୁଏ ॥
ଏହିହେତୁ ତୁମ୍ଭ ସଙ୍ଗେ ପ୍ରୀତି କରି ଶରଧା ।
କୁନ୍ଦଲତା ଗଲେ ବେଗେ ଘେନିଆସିବେ ରାଧା ॥
ଶୁଣି ଯଶୋବନ୍ତୀ ପେଷେ କୁନ୍ଦଲତାକୁ ଚାହିଁ ।
ମୋର ନିବେଦନ କହ ଜଟିଳାକୁ ମଣାଇ ॥
ମୁହିଁ ଶୁଣିଲି ରାଧିକା ରନ୍ଧନରେ ନିପୁଣ ।
ଜାଣେ ନାଡ଼ଶୀ ସଡ଼ଶୀ ନଳ ଭିନ ବିଧାନ ॥
ଆଜ ହେବ ଗୋପାଳ ଭୋଜୀ ନିମନ୍ତ୍ରଣ ଅଛି ।
ପେଷିବ ମୋ ସଙ୍ଗେ ରାଧା ପ୍ରହରେକ ମୁହୁର୍ତ୍ତି ॥
ଏତେକହି ଦାସୀସଙ୍ଗେ ଦେଇ ଉତ୍ତମ ଦ୍ରବ୍ୟ ।
ଆଜ୍ଞା ପାଇ କୁନ୍ଦଲତା ଚଳେ ହରଷଭାବେ ॥
ତୁରିତେଣ ଯାଇ ଯାବଟରେ ପ୍ରବେଶ ହେଲେ ।
ରାଧାକୁଞ୍ଜ ତେଜ ସଖୀସଙ୍ଗେ ପୁରେ ଯେ ଗଲେ ॥
ରତିଶ୍ରାନ୍ତେ ନିଶାଉନ୍ନିଦ୍ରରେ ତନୁ ଅଳସ ।
କୃଷ୍ଣ ବିଚ୍ଛେଦ ଖେଦରେ ଗରୁ କୁଚ କଳଶ ॥
ଶୁଭ ପଲଙ୍କରେ ଗତପ୍ରୀତି ସୁମରେ ମତି ।
ମନ ନୟନୁ ନ ଛୁଡ଼ଇ ସ୍ୱପନରେ ପତି ॥
ଆହା ପ୍ରାଣନାଥ ମୋର କେଉଁଠାଗଲେ ବିହ୍ୱଳେ ।
ମୋତେ ଛୁଡ଼ଯାଇ ନିଷ୍ଠୁରରେ ଶୟନ କଲେ ॥
ନିଦ୍ରା ନୋହିବ କମଳନେତ୍ରେ ମୋର ବିଚ୍ଛେଦେ ।
ଏତେସୁଖ ଏଡ଼ଗଲ ଏହି ଅରୁଣଉଦେ ॥
କେତେବେଳେ ଯାଇ ପ୍ରାଣନାଥ ମୁଖ ଦେଖିବ ।
ଏତେବେଳଯାଏ ଧୈର୍ଯ୍ୟ କେମନ୍ତେ ରଖିବ ॥
ସତେକ ଦଇବ ମୋରେ ଅନୁକୂଳ ହୋଇବ ।
ନନ୍ଦମନ୍ଦିରକୁ ସଖୀ ସଙ୍ଗେ ଘେନାଇ ଯିବ ॥
କୃଷ୍ଣଙ୍କ ନିମିତ୍ତ ପାକ ସମ୍ପାଦିବ ଯତନେ ।
କୃଷ୍ଣମୁଖ ଅବଲୋକେ ଦୁଃଖ ଯିବ ସେକ୍ଷଣେ ॥
ମନସ୍କାମନା ଅନ୍ତରେ ସେହି ଚେଷ୍ଟା ଆଭାସେ ।
କୃଷ୍ଣ ଅଙ୍ଗସଙ୍ଗ ନଖକ୍ଷତ ଚିହ୍ନ ଉଲ୍ଲାସେ ॥
ଚମକଣ ଗୃହ କହାଉନ୍ତେଣ ସଖୀ ଚେତାଇ ।
ଶ୍ୟାମ ଅଙ୍ଗେ ଜଡ଼ ନ ଛୁଡ଼ଇ ମନେ ଭାବଇ ॥
ସ୍କନ୍ଧେ ମାଜଣା ସୁବେଶ ହୋଇ ଆଳସ୍ୟ ତେଜ ।
କାମମୋହନକୁ ମୋହିବାକୁ ଶ୍ରୀଅଙ୍ଗ ସାଜ ॥
ଦନ୍ତଧାବନପୂର୍ବକ ମାଡ଼ି ବେଗ ବଢ଼ାଅ ।
ବୁଢ଼ୀ ନ ଦେଖଣୁ ଉତ୍ତରଙ୍ଗ ଚିହ୍ନ ଛଡ଼ାଅ ॥
ଶୁଣି ଚଞ୍ଚଳଚିତ୍ତରେ ଶଯ୍ୟା ତେଜଣ ଚଳେ ।
ପ୍ରାତଃକୃତ୍ୟ ବଢ଼ାଇ ମାଜଣାମଣ୍ଡପେ ମିଳେ ॥
ହେମବର୍ଣ୍ଣ ଚୂତପତ୍ରେ ଦନ୍ତଧାବନ କରି ।
ତୋଳ ସୁଦେବୀ ଦିଅନ୍ତି ହେମଝରରେ ବାରି ॥
ହେମପାତ୍ରରେ ରସନା ଶୋଧି ଦଶନ ଖୁଣ୍ଟି ।
ସେସ୍ଥା ସେବା ଘେନି ସଖୀଗଣ ଅଛନ୍ତି ଖଟି ॥
ଜେମା ମାଜଣା ନିମିତ୍ତ ବାସ ପରିଧାପନ ।
ସୁବାସିତ ତୈଳେ ଗନ୍ଧ ଶ୍ରୀଅଙ୍ଗରେ ଲେପନ ॥
ନାନା ସୁଗନ୍ଧ କୁଙ୍କୁମ ଘାଣ୍ଟି ଶ୍ରୀଅଙ୍ଗେ ବୋଳ ।
ଛଡ଼ାଗନ୍ଧ ଦୂର କଲେ ସର୍ବସଜନୀ ମିଳ ॥
ଶୁଦ୍ଧଜାମ୍ବୁନଦ ରସାଣିଲେ ଯେସନେ ଉଜ୍ଜ୍ୱଳ ।
ମୃଦୁମନୋହର ତନୁ ତେସନେ ଦିଶେ ନିର୍ମଳ ॥
ତିଳ ଅଂଳାଦି ନବଗ୍ରହ ନାନା ସୁଗନ୍ଧେ ।
ସ୍ନାନ ସୁବାସଜଳେ କରାନ୍ତି ସଜନୀବୃନ୍ଦେ ॥
ଶତ ହେମକୁମ୍ଭ ଶୀତଜଳ ମସ୍ତକେ ଢାଳ ।
କେହୁ ଅଙ୍ଗ ମାର୍ଜନା କରି କେଶ ପଖାଳ ॥
ପଟ୍ଟବାସେ ତନୁ ପୋଛୁ ପିନ୍ଧି ସୁରଙ୍ଗପାଟେ ।
ବେଶ ନିମିତ୍ତ ବିଜେ କରାଇ ରତନପୀଠେ ॥
ଘେନ ବଞ୍ଜନୀ ଚମ୍ପକଲତା କେଶ ଶୁଖାଏ ।
ପାଶେହେଳି ଅଗ୍ରଧୂପ ରଙ୍ଗଦେବୀ ଦେଖାଏ ॥
ଗୁରୁଚିକୁଣୀରେ ଚିରି ବେଣୀରଞ୍ଜେ ତୁଳସୀ ।
ଚନ୍ଦ୍ରରଶ୍ମି ମୋତି ସୀମନ୍ତିସେ କେତକୀଖୋସି ॥
ହେଳି ନର୍ମଦା ମାଳୁଣୀ ନାନା କୁସୁମ ଆଏ ।
..ବେଣୀରଞ୍ଜି ଅଗ୍ରେ ଥୋପାମଣ୍ଡି ପୃଷ୍ଠେଲମ୍ବାଏ ॥
ଚଉପାଶେ ବେଢ଼ି ସହଚରୀ ବେଶ କରଇ ।
ଗନ୍ଧଚନ୍ଦନ ସିନ୍ଦୂର ହେମପାତ୍ରେ ପୂରଇ ॥
ମୃଗମଦ କର୍ପୂର ଚୂଆଚନ୍ଦନ ଗୋଳି ।
ରଚେ ବିଶାଖା ଚନ୍ଦ୍ରମକର/ସୁପତ୍ରାବଳୀ ॥

ନୀଳନଳିନ ନୟନେ ସରୁ ଅଞ୍ଜନ ରଂଜ ।
ସ୍ବଚ୍ଛଭ୍ରୂଲତା କୋଦଣ୍ଡଗୁଣ ପ୍ରାଏ ବଙ୍କ ॥
ରତ୍ନ ଆଭରଣ ଯେତେଣ ଅନଙ୍ଗ ମଞ୍ଜୁଷା ।
ଅଙ୍ଗେ ଅଙ୍ଗେ ଖଞ୍ଜେ ଭୃଙ୍ଗବିଦ୍ୟା ପ୍ରମୋଦଭର ॥
ହେମଗୁଣ ମୋତିବର ତିଳଫୁଲ ନାସାରେ ।
ମଲ୍ଲିକଢ଼ି ଫୁଲଗୋଟି ଆମକର୍ଣ୍ଣଦେଶରେ ॥
ସାଚପାନ ଗୁରୁ ହେମପାତ୍ର କର୍ପୂରଯୋଗେ ।
ବିମ୍ବାଧରେଣ ଲଳିତା ଲାଗି କରେ ସଂଯୋଗେ ॥
ଗଳେ ହେମଗୁଚ୍ଛସର ହେମମାଳା ପଦକ ।
ରତ୍ନବେଢ଼ରେ ମେଢ଼ ମଧ୍ୟରେ ନୀଳାନାୟକ ॥
ବାହେ ତାଡ଼ କରେ ଚୂଡ଼ ରତ୍ନମୁଦ୍ର ଅଙ୍ଗୁଳି ।
ସର୍ବାଙ୍ଗରେ ଘନସାର ଗୁରୁଚନ୍ଦନ ବୋଳି ॥
ଚିନା ଗନ୍ଧାଗୁଂଗନ୍ଧାରେ ନାନା ବସନ ଭଙ୍ଗି ।
ବେଶ ଅନୁରୂପେ ବାସ ପୁଣି ଶ୍ରୀଅଙ୍ଗେ ଲାଗି ॥
ନୀଳ ମୃଦୁଳ ଦୁକୂଳକଟି ପରିଧାପନ ।
ହେମମେଖଳା କଙ୍କିଣୀ ସାରବନ୍ଧ ଶୋଭନ ॥
ଉରେ ମଣ୍ଡଳେ କନକ କମନୀୟ କାଞ୍ଚୁଳି ।
ପୃଷ୍ଠଭାଗରେ ବନ୍ଧଖଞ୍ଜଣୀ ଝୁମ୍ପା ଓହୋଳି ॥
ସରୁ ସୁରଙ୍ଗ ଅମ୍ବର ଉପରଣ ଉପରେ ।
କିବା ଅରୁଣ ଆଚ୍ଛାଦେ ହେମଗିରିବରରେ ॥
ହୃଦେ ଅନୁରାଗଲତା ବଢ଼ି ପୁଟି ବିକଶେ ।
କୃଷ୍ଣ ତମାଳ ତରୁକୁ ଅବଲମ୍ବନ ଆଶେ ॥
ପଦ୍ମପୟରେ ନୂପୁର ଗୁରୁ ଝୁଣ୍ଟିଆ ଖଞ୍ଜି ।
ଅତି ମନୋହର କରି ସରୁ ଅଳତା ରଞ୍ଜି ॥
ଧରି ଦର୍ପଣ ଶ୍ରୀମୁଖରେ ଇନ୍ଦୁରେଖା ଦେଖାଇ ।
ଶ୍ୟାମମୋହନ ବେଶକୁ ଚାହିଁ ପୁଲକ ରାଇ ॥
ଲୀଳାପଦ୍ମ ବୃନ୍ଦା ନେଇ ଏହି ସମୟେ ଦେଲେ ।
ବେଶ ବଢ଼ାଇ ସଜନୀଗଣ ମଙ୍ଗଳ କଲେ ॥
ଏମନ୍ତେଣ ମିଳେ କୁନ୍ଦଲତା ଜଟିଳା ପାଶେ ।
ପାଦେ ଓଳଗନ୍ତେ ବୃଦ୍ଧା କୋଳେ ଧରି ଆଶ୍ବାସେ ॥
ପାଶେ ବସାଇଣ ପୁଚ୍ଛେ ବ୍ରଜେଶ୍ବରୀ କୁଶଳ ।
କହେ ସୁଭଦ୍ରବନିତା ମାଏ ସର୍ବ ମଙ୍ଗଳ ॥
ପୁଣ ପୁଚ୍ଛେ ଉପହାର ଦ୍ରବ୍ୟ ଦେଖି ଯତ୍ନାରେ ।
ବ୍ରଜେଶ୍ବରୀ ନିମନ୍ତ୍ରଣ ଦେଇଛନ୍ତି ତୁମ୍ଭରେ ॥

ଅଘା ବକାଦ୍ଦି ସମ୍ପଦ ହରୁଥିଲେ ସବୁରି ।
ଧର୍ମବଳେ ବାଳମେଳେ ରାମକୃଷ୍ଣ ଉବୁରି ॥
ଏହୁ ଶତ୍ରୁଖଣ୍ଡନଙ୍କୁ ଭୋଜି ଗୋପାଳେ ଦେବ ।
ପୁତ୍ରବଧୂ ଯେବେ ତୁମ୍ଭେ ନନ୍ଦପୁରକୁ ଯିବ ॥
ରାଧା ରନ୍ଧନା ଯୋଗାଡ଼ ସବୁ ଅମୃତମୟେ ।
ମୋତେ କହ୍ବଣ ପେଷିଅଛନ୍ତି ବନ୍ଧୁ ବିନୟେ ॥
ଅତି ଶରଧା ରାଧାକୁ ମୋର ସଙ୍ଗେ ପେଷିବ ।
ବ୍ରଜେଶ୍ବରୀ କଥା ଯେବେ ବେନି କୁଳ ତୋଷିବ ॥
ଏପ୍ରବନ୍ଧ ଶୁଣି ଜଟିଳା ବଖାଇ କହେ ବଚନ ।
ଧେନୁ ମଧ୍ୟ ଦିନେ ଦିନକର କରେ ଅର୍ଚ୍ଚନ ॥
ଦୁର୍ବାସାଙ୍କ ଆଜ୍ଞା ପୌର୍ଣ୍ଣମାସୀ ଉପଦେଶରେ ।
ବାଧ୍ୟ ହେଲେ ଶସ୍ତ୍ର ହେବ ଅଭିମନ୍ୟୁ ଆୟୁରେ ॥
ବୃଷଭାନୁ ଶାଶୁ ମୁଖରା ପ୍ରବେଶ ଏକାଳେ ।
ରାଧାମୁଖୀ ବନ୍ଦୁମନ୍ତି ବେନି ଜାଣି ମିଳିଲେ ॥
କୁନ୍ଦଲତା ଜଟିଳାର କଥା ବିଷାଦେ ପଢ଼ି ।
ରାଧାମୁଖୀ କହେ ଉଭୟଙ୍କୁ ସଂଶୟ ଫେଡ଼ି ॥
କାର୍ଯ୍ୟକାରଣେ ଯୋଗାଡ଼ ଭଲ ରନ୍ଧୁଣୀ ଲୋଡ଼ା ।
ଅମୃତୁଁ ଅଧିକ ତୁମ୍ଭ ବଧୂ ପାକସଜଡ଼ା ॥
ମୁଖରାର ମୁଖ ଚାହିଁ ବନ୍ଦୁମନ୍ତି କହଇ ।
ନିମନ୍ତ୍ରଣ ଅବଜ୍ଞାରେ କର୍ମଫଳ ନୁହଇ ॥
ବେନିଜନଙ୍କୁ ଏ ବେନି ସଖୀ ଉଚିତ କହେ ।
ନିମନ୍ତ୍ରଣ ଯେବେ ଚଳ ପୁତ୍ରବଧୂ ସମୂହେ ॥
ଅଭିମନ୍ୟୁ ଦୂରଗୋଷ୍ଠେ ତୁମ୍ଭେ ଗୃହ ଜଞ୍ଜାଳେ ।
ଯାଇ ନ ପାରିଲେ ବଧୂ ଯାଉ ଏହାଙ୍କ ମେଳେ ॥
ପ୍ରହରେକ ନନ୍ଦପୁରେ ରହି ଆସିବେ ରାନ୍ଧି ।
ପୁଣ ମଧ୍ୟାହ୍ନେ କରିବେ ଅର୍କପୂଜାର ବିଧି ॥
ଏମନ୍ତେଣ ବେନିକୁଳ କାର୍ଯ୍ୟ କାରଣ ରହୁ ।
କୁନ୍ଦଲତା ବୋଲେ ମାଏ ଏହୁ ପ୍ରମାଣ ହେଉ ॥
ଶୁଣି ମୁଖରା ଜଟିଳା ସନମତେ ବିଚାରି ।
ପୁଣ ଜଟିଳା କୁନ୍ଦଲତାକୁ କଥା ପଚାରି ॥
ତୁମ୍ଭ ଦିଅର କହ୍ନାଇ ଅଦଭୁତ ଚରିତ୍ର ।
ପର ରମଣୀ ରମଣେ ରତ ଅନୁବରତ ॥
କୁଳବଧୂ ଯାତ ନଦୋହଲାଇ ଶୁଷ୍କ ବାଉଁଶେ ।
ନଯାଇନ୍ଧ ଏବାନି ଚମ୍ପକଗନ୍ଧି ନବକାଇଁଶେ ॥

ଧରି ଧଇର୍ଯ୍ୟ ନ ରହେ ଗୃହେଁ ମୋହନରୂପ ।
ଏହି କଥା ମନେ ବିଚାରିଣ ପାଉଛି ତାପ ॥
ଚୁପି ଦଶନେ ରସନା କାମ୍ପ୍ତି କରକୁ ଦେଇ ।
କୁନ୍ଦଲତା କହେ ଅତି ଲାଜକୁଳା କହ୍ନାଇ ॥
ପରିହାସ ଭାଷା ହେନେ ଆମ୍ଭେ ଶୁଣି ତ ନାହୁଁ ।
ତାର ଆଉଳ ପାଉଳ ଘେନୁ କହିଲୁ ଯେହୁ ॥
ସେତ ରାସ ଦିବସରେ ଦଣ୍ଡେ ନ ରହେ ଘରେ ।
ନିରନ୍ତର ଗୋଷ୍ଠେ ବନେ ସଖା ଘେନି ବିହରେ ॥
ଆମ୍ଭେମାନେ ହାସ୍ୟ କଲେ ତହୁଁ ଲାଜ ପଳାଇ ।
ପରବଧୂକୁ କେମନ୍ତେ ପୁଣି ମତି ବଳାଇ ॥
ଧର୍ମେ ଥିଲାକୁ ସେ ଧର୍ମ ଦେଖ ପ୍ରତିପାଳଇ ।
ନୋହିଲେ କି ବକା ଅଘା ବଦନରୁ ତରଇ ॥
ପୂର୍ବେ ଗର୍ଗ କହିଛନ୍ତି ଏହୁ ଗୋପ ରଖିବ ।
କରଦାନ ଛଡ଼ାଇଣ କଂସଭୟୁ ନାଶିବ ॥
ବୋଲେ ଜଟିଳା କହିଲ ଅମା ସ୍ୱରୂପ କଥା ।
ଦୁଷ୍ଟ ସଂହାରି ଗୋକୁଳେ ଶୁଣି ବଡ଼ ସମର୍ଥା ॥
ସେହୁ ରାମକୃଷ୍ଣ କୁଶଳ ସମସ୍ତଙ୍କ ଲୋଡ଼ା ।
ନିଅ ରାଧାଙ୍କୁ ସଙ୍ଗରୁ କ୍ଷଣେ ନୋହିବ ଛଡ଼ା ॥
ମୋର ଏତକ ମାଗୁଣି କୁଳରକ୍ଷା ନିମନ୍ତେ ।
ବ୍ରଜେଶ୍ୱରୀ ଚିନ୍ତାମଣି ବଧୂ ଲଭେ ଯେମନ୍ତେ ॥
ଶୀଘ୍ର ଆସି କରି ମଧ୍ୟାହ୍ନରେ ଅର୍କ ଅର୍ଚ୍ଚନ ।
ସନମତ ପ୍ରମୋଦରେ କୁନ୍ଦଲତା ବଚନ ॥
ନିଜ ଉରେ କର ଦେଇ ବୋଲେ ଲାଗିଲା ମୋତେ ।
ବ୍ରଜେଶ୍ୱରୀ ଚିନ୍ତାମଣି ବଧୂ ଲଭେ ଯେମନ୍ତେ ॥
ପ୍ରହରେକ ପାକ ସମ୍ପାଦିଣ ଆଣିବ ଜେମା ।
ସତ୍ୟ ଅସତ୍ୟ ମୋ ବାଣୀ ଆଜଠାରୁ ଜାଣିମା ॥
ସଖୀଜନେ ଶୁଣି ବେଗେ ରାଧାମୁଖରେ କହି ।
ଅନନ୍ତରେ ହରଷେ ବୋଲେ ଏମନ୍ତଅଛି କାହିଁ ॥
କାହା ବଧୂ ପର ଘରେ ଗମେ ରାନ୍ଧି ଶ୍ରୀପନେ ।
ନିଜ ଝିଅ ପଠିଆନ୍ତି ବ୍ରଜେଶ୍ୱରୀ ବରଣେ ॥
ସୂର୍ଯ୍ୟପୂଜା କରି ଯାଏ ତେଣୁ ଆସି ନ ପାରେ ।
ଗୃହଚରଗୃରେ ତନୁ ଅତି ଅଶକତରେ ॥
ଶାଶୁ ବୋଲନ୍ତି ଗୋ ମାଏ ଲୁଚିଯାଇ ତୁମ୍ଭର ।
ସେହୁ ବ୍ରଜେଶ୍ୱରୀ ସବୁଦିନେ ହିତ ଆମ୍ଭର ॥

ପର ବୁଝନ୍ତି ଆପଣା ବୋଲି ତାଙ୍କୁ ଜାଣିବା ।
ମୋର ତହୁଁ ଶତଗୁଣେ ଇଷ୍ଟ କରି ମାନିବା ॥
ଗୃହଚରଗୃ ଏବେ ତୁମ୍ଭଙ୍କୁ କିଛି ନ ଲାଗୁ ।
ତୁମ୍ଭ ନନ୍ଦ ଗୋରସ ଆଦି ରାନ୍ଧି ସଂଯୋଗୁ ॥
ନନ୍ଦମନ୍ଦିରେ ସଜନୀବୃନ୍ଦ ଘେନି ବିଧାନେ ।
ପାକ ସମ୍ପାଦି ତପନ ପୂଜି ଆସି ମଧ୍ୟାହ୍ନେ ॥
କୁନ୍ଦଲତା ଅମ୍ଭ ବିଶ୍ୱାସ ବଚନରେ ଥିବ ।
ଯଶୋବନ୍ତୀ ବନ୍ଦିପ୍ରହରେକ ରାନ୍ଧି ଆସିବ ॥
କୁନ୍ଦଲତା କରେ କର ଦେଇ ଏତକ କହି ।
ତୁମ୍ଭେ ଘେନି ଆସି ସୂର୍ଯ୍ୟପୂଜା କରାଅ ରାଈ ॥
ପୁଣି ଲଳିତା ବିଶାଖା ସଖୀଗଣଙ୍କୁ କହେ ।
ରାଈ ରକ୍ଷାପାଳ କରି ବେଗେ ଆଣିବ ଗୃହେ ॥
ଶାଶୁ ଆଜ୍ଞାପାଇ ତୋଷ ରାଧା ସଜନୀବୃନ୍ଦେ ।
କୁନ୍ଦଲତା ଘେନି ନନ୍ଦପୁର ଗଲେ ଆନନ୍ଦେ ॥
ରାଈ ଆସିବାକୁ ଯଶୋବନ୍ତୀ ପଥ ନିରେପେ ।
ଏମନ୍ତେଣ ସଖୀ ସଙ୍ଗେ ରାଧା ମିଳେ ସମୀପେ ॥
ପାଦେ ଓଳଗନ୍ତି କୋଳ କରି ଯଶୋଦା ଘେନେ ।
ନବବଧୂ ନବପ୍ରବେଶରେ ଆନନ୍ଦ ଯେହ୍ନେ ॥
ଶିର ଆଉଁସି ଆଘ୍ରାଣ କରି କଲ୍ୟାଣ ବାଣୀ ।
ପତି ସଉଭାଗୀ ସୁଲକ୍ଷଣୀ କୁଳମଣ୍ଡନୀ ॥
ରୋହିଣୀ ପାଶେ ଆନନ୍ଦେ ଯେତେ ସଜନୀଗଣ ।
ପାଦେ ଓଳଗନ୍ତେ କର ଧରି କରେ କଲ୍ୟାଣ ॥
ସଖୀ ଜଣେ ଜଣେ ଓଳଗିଲେ ସମ୍ଭାବନାରେ ।
ପାଦ ପଖାଳିଣ ପାକଶାଳେ ଗଲେ ଆଦରେ ॥
କୁନ୍ଦଲତା କହେ ଜଟିଳାର ବଚନ ଯେତେ ।
ଶୁଣି ନନ୍ଦରାଣୀ ବଧୂକୁ ପ୍ରଶଂସେ ବହୁତେ ॥
ରୋହିଣୀର ସଙ୍ଗେ ରାଈ ଯାଇ ପାକ ସମ୍ପାଦେ ।
କର ଲାଗିବା ମାତ୍ରକେ ହୁଏ ସକଳ ସିଦ୍ଧି ॥
ସଖୀ ଲଳିତା ବିଶାଖା ଚିତ୍ରା ଚମ୍ପକଲତା ।
ରଙ୍ଗଦେବୀ ଯେ ସୁଦେବୀ ତୁଙ୍ଗବିଦ୍ୟା ସହିତା ॥
ଇନ୍ଦୁରେଖା ଚନ୍ଦ୍ରମୁଖୀ ଜ୍ୟେଷ୍ଠା ଧନିଷ୍ଠା ଆଦି ।
ପ୍ରିୟମାଲତୀ ବାସନ୍ତୀ ସେ ତୁଳସୀ ପ୍ରସିଦ୍ଧି ॥
ରୂପମଞ୍ଜରୀ ଗୁଣମଞ୍ଜରୀ ରତ୍ନମଞ୍ଜରୀ ।
ଏହି ଆଦି ଏକ ଏକ ଆଉଡ଼ିକ ଆବୋରି ॥

ଦେଖି ଦାସୀଙ୍କି ଲଗାଇ ଫଳମୂଳ ପଲ୍ଲବେ ।
ନତ ତୋହାରୁ ସେବକେ ଖଣ୍ଡାନ୍ତି ସେ ସୂକ୍ଷ୍ମତେ ॥
ନାନାବିଧ ବ୍ୟଞ୍ଜନକୁ ପରଜନେ ସଂଯୋଗି ।
ଯେହୁ ସହିଁକି ସେ ଲୋଡ଼ା ସେହୁ ଦ୍ରବ୍ୟ ନିଯୋଗି ॥
ଜିରା ଜାଇଫଳ ତେଜପତ୍ର ମେଥି ମରିଚ ।
ହିଙ୍ଗୁ ଲବଙ୍ଗ ଗୁଆଣି ଶ୍ରୀକର୍ପୂର ଏଲାଚ ॥
ଅଦା ଲବଣ ତିନ୍ତିଡ଼ିରସ ମିଶ୍ରିଶର୍କରେ ।
ଷଡ଼ରସରେ ଯୋଗାଡ଼ ସର୍ବ ଘୃତପକ୍ୱରେ ॥
ଶାକ ଶାକର ଘଣ୍ଟାମୁଗ ମଧୁର ଘଣ୍ଟାତଳିଆ ।
ଏକେବେକ ତିନି ପରିବା ମିଶାଣି କରିବା ॥
ମଧୁରୁଚି ମନରୁଚି କରି ମରିଚପାଣି ।
ଏକ ଅନେକ ପ୍ରକାରେ ତାହା କେ ପାରେ ଗଣି ॥
ଫଳମୂଳ ଭକ୍ଷ୍ୟ ଆଦି ତିନିଶହ ବ୍ୟଞ୍ଜନ ।
ଅଛି ଯତନେ ଯେମନ୍ତେ କୃଷ୍ଣ ମନରଞ୍ଜନ ॥
କ୍ଷୀର ଶିଖରିଣୀ କ୍ଷିରସା ଖେଚଡ଼ି ବାଟୁଲା ।
ଦଧିକଡ଼ି ମାଠରୁଆ ପରିପାକ କୋମଳା ॥
ନାନାବର୍ଣ୍ଣେଣ ଫୁଲସାବଲ୍ଲଭର ତଣ୍ଡୁଳେ ।
ସର ଦୁଧସାର ନାରିକେଳ ରସ ସାକରେ ॥
ଘୃତ ପୂରିଇ ବିବିଧ ପୁରି ଖଣ୍ଡମିଶାଇ ।
କେହୁ ପ୍ରମାଣେ ଜଡ଼ାଇ କସ ଦୁର୍ଗନ୍ଧ ବୁଡ଼ାଇ ॥
ନାନାପ୍ରକାରେଣ ଲଡ଼ୁ ବଡ଼ା ମହାପଷ୍ଟକ ।
କୃଷ୍ଣ ବଡ଼ ଶ୍ରଦ୍ଧା ଅମୃତକେଳିରେ ଅଧିକ ॥
ନାଡ଼ ପାଚୁଡ଼ି ଚିପୁରି ଝିଲ୍ଲି ଗୋଧୂମରୁଟି ।
ସରପୁଳି ଶ୍ରୀକର୍ପୂରକେଳି କୃଷ୍ଣ ରୁଚଟି ॥
ନାରିକେଳରସ କୋରା ରସ ଚନ୍ଦ୍ର ଉଜ୍ଜ୍ୱଳା ।
ଖଇଘୃତେ ପୋଇଖଣ୍ଡ ଚୂର୍ଣ୍ଣକର୍ପୂର ମେଳା ॥
ଏହିମତେଣ ଅନେକବିଧ ପାକ ସମାଧ ।
କାମଧେନୁ ପ୍ରସାଦରୁ ହୁଏ କ୍ଷଣେକେ ସିଦ୍ଧି ॥
ନବମୃତ୍ତିକା ପାତ୍ରରେ ଭିନ୍ନ ଭିନ୍ନ ରଖାଇ ।
ଯଶୋଦାଙ୍କୁ ଆଣି ପରିଗୁଣ କହି ଦେଖାଇ ॥
ବେଦଘଡ଼ିମାନେ ଏତେ ହର୍ଷ ଦେଖି ପ୍ରଶଂସେ ।
ତତ୍‌କାଳେ ଭୃତ୍ୟଜନ ଯାଇ ଗୋଷ୍ଠକୁ ପେଷେ ॥
ବେଗେଣ ରାମକୃଷ୍ଣଙ୍କୁ ଗୋପକୁମାର ସଙ୍ଗେ ।
ବୃଷଭାନୁନନ୍ଦିନୀର ପାକ ଭୁଞ୍ଜିବେ ରଙ୍ଗେ ॥

ଏକ ପରେ ଆରକକୁ ପୁଣ ପୁଣ ପେଶନ୍ତି ।
ଦୁଧଭାରମାନ ଘେନିଣ ଗୋପାଳେ ଆସନ୍ତି ॥
ମାଏ ପଚାରନ୍ତି କାହ୍ନୁ ମୋର କି କରୁଅଛୁ ।
କେହୁ କହେ କୁମର ଭ୍ରମର ଗାଈ ଦୁହୁଁଛୁ ॥
କେହୁ ବୋଲନ୍ତି ସେ ବୃଷେ ବୃଷେ ଯୁଦ୍ଧ ଲଗାଇ ।
ମହାବଳୀସ୍ୱାର ଷଣ୍ଢକୁ ନ ପାରେ ଭଗାଇ ॥
କେହୁ ବୋଲନ୍ତି ବାଳକମେଳେ ଲଉଡ଼ି ଖେଳେ ।
କେହୁ ବୋଲେ ଘଣ୍ଟବେଣୁ ଆଣି ବନକୁ ଗଲେ ॥
ଶୁଣି ଆରତ ଉଦ୍ରେକେ ମାଏ ଲୋକବରଗେ ।
ମୋର ସପଥ ଦେଇ କୃଷ୍ଣଙ୍କୁ ଆଣିବ ବେଗେ ॥
ଆଜ ପ୍ରଭାତୁଁ ଦେଖିଛୁ ପେଟ ଯାଉଛି ପଶି ।
ମାସଉପବାସୀ ପ୍ରାୟ ଅଛି ଦୁର୍ବଳ ହରି ॥
ଭୃତ୍ୟଗଣ ପେଷି ଖଣ୍ଡେଦୂର ଯାଇ ଅନାଇଁ ।
ଦୁଧଭାର ଚଳାଇଣ ପଛେ ଆସେ କହ୍ନାଇ ॥
ଘନ ଘନ ଭୃତ୍ୟଜନେ ଦେଖି କରେ ହାକରି ।
ଆଜ ବୃଷଭାନୁ ଜେମା ଆଣି ପାକେ ତତ୍ପରି ॥
ଶୁଣି ସାନନ୍ଦେ ସୁବଳ ମଧୁମଙ୍ଗଳେ ଗ୍ରହିଁ ।
କାହିଁ ଇଷିତେ ଇଙ୍ଗିତେ ମଧୁମଙ୍ଗଳ କହ୍ନ ॥
ଲୁଙ୍ଗବିଛେଦରେ ପଦ୍ମ ମକରନ୍ଦ ଉନ୍ମତ୍ତେ ।
ଯେହୁ ଭୁଜ ଣ ପଦ୍ମିନୀ ଆମେ କାନ୍ତପୁରତେ ॥
ପୁଣି ରକ୍ଷକ ସେବକ ଯାଇ କୃଷ୍ଣଙ୍କୁ କହେ ।
ବେଗେ ପୁରେ ଚଳ ଆଜ୍ଞା ଦେଇଅଛନ୍ତି ମାଏ ॥
ବୃଷଭାନୁ ଦୁହିତାକୁ ଆଣି ପାକସଂଯୋଗେ ।
ଷଡ଼ରସରେ ଭୋଜନ ସର୍ବକୁମାର ସଙ୍ଗେ ॥
ଶୁଣି ନାଚେ ବଟୁ ଆନନ୍ଦରେ ହେଣ୍ଡି କି ମାରି ।
ଆଜ ଭୁଞ୍ଜିବାରେ ମହାସ୍ୱାଦୁ ଉଦର ଭରି ॥
ପୁଣି କୃଷ୍ଣ ଧରି କହେ ତୋତେ ମୁରଲୀବଣ ।
ମୋତେ ତୋର ପେଟ ଲଡ଼ୁ ଦେବୁ କର ପ୍ରମାଣ ॥
ହଜ ହଜ ଦେବା ବୋଲି କୃଷ୍ଣଚନ୍ଦ୍ର ହସନ୍ତି ।
ରାମ ସୁଦାମ ସୁଭଦ୍ର ଆଦି ଆସି ମିଳନ୍ତି ॥
ପୁରେ ପ୍ରବେଶ ହୁଅନ୍ତେ ମା ବୋଲନ୍ତି ସ୍ନେହରେ ।
ଏତେ ବିଳମ୍ବ ସେ କକେ ଦୁଃଖ ଦେଇ ମୋହରେ ॥
ସର୍ବେ ସ୍ନାନ ସୁବେଶ ହୋଇଣ ଭୋଜନେ ବସ ।
ଶୁଣି ଜନନୀ ବଚନ ଗୋପପୁଏ ହରଷ ॥

ସ୍ନାନ ସୁବେଶ ହେବାକୁ ଯେଝାପୁରକୁ ଗଲେ ।
ପୁରମାଜଣା ମଣ୍ଡପେ କୃଷ୍ଣ ବିଜୟ କଲେ ॥
ସୁଗନ୍ଧେଣ ତୈଳ ପୁଷ୍ପ ସୁବାସିତ ତଇଳେ ।
ଅଙ୍ଗମର୍ଦ୍ଦନ କରିଣ ସ୍ନାନ ସୁବାସ ଜଳେ ॥
କରେ ରକ୍ତକ ମାର୍ଜନ ପ୍ରକ୍ଷାଳନ ଶ୍ରୀଅଙ୍ଗ ।
କଟିଦେଶେ ପୀତବାସ ଲାଗି କରେ ସାରଙ୍ଗ ॥
ପାଦେ ନୂପୁର କରେ ବଳୟ କଟି କିଙ୍କିଣୀ ।
ଉରେ ହାର ମାଳପଦକ ଏ କୌସ୍ତୁଭମଣି ॥
କର୍ଣ୍ଣେ କୁଣ୍ଡଳ ନାସେ ମୁକୁତା ଭାଲେ ତିଳକ ।
ଗନ୍ଧଚନ୍ଦନ ସର୍ବାଙ୍ଗେ କରେ ନାନାଚିତ୍ରକ ॥
ବିମ୍ବାଧରେଣ ତାମ୍ବୁଳ ଲାଗି କରେ ଜମ୍ଭିଲା ।
ନର୍ମଦାର ପୁଷ୍ପ ସେବେ ଗନ୍ଧ କୁସୁମମାଳା ॥
ଚୂଳ ବନାଇଣ ସୁବଳ ନାନା କୁସୁମେ ମଣ୍ଡି ।
ପଦ୍ମପାଦେ ଦାସ ଦେଲା ରତ୍ନପାଦୁକା ଯୋଡ଼ି ॥
ନବପ୍ରିୟ ପୁରପ୍ରବେଶେଣ ଯେତେକ ବଲ୍ଲଭ ।
ଅନୁରାଗେ ଉଦବେଗ ହର ଅତି ଦୁର୍ଲ୍ଲଭ ॥
ବେଗେ ବଢ଼ାକର ମାତଃ ମୋତେ କ୍ଷୁଧା ଲାଗୁଛି ।
ମାଏ ବୋଲନ୍ତି ହେ ବାବୁ ସବୁ ସଂଯୋଗ ଅଛି ॥
ସର୍ବ କୁମାରଙ୍କୁ ଘେନ ପାଦପଖାଳ ବସ ।
ବୃଷଭାନୁଜେମା ପାକ ଭୁଞ୍ଜି ଉଦର ତୋଷ ॥
ଶୁଣି ଚରଣ ପଖାଳ ହରି ଭୋଜନସ୍ଥଳେ ।
ହେମଆସନେ ବସିଲେ ସର୍ବକୁମାର ମେଳେ ॥
କୃଷ୍ଣ ଦକ୍ଷିଣେ ସୁଭଦ୍ର ବଳଭଦ୍ର ଶ୍ରୀଦାମେ ।
ମଧୁମଙ୍ଗଳ ସୁବଳ ଆଦି ବସିଲେ ବାମେ ॥
ରତ୍ନଝରରେ ସୁବାସବାରି ସକଳ ପାଶେ ।
ରାଧା ହେମପାତ୍ରେ ସଂଯୋଗେ ରୋହିଣୀ ପରଶେ ॥
କ୍ରମେ ପ୍ରବେଶ କରିଣ ସର୍ବଠାବରେ ଦେଲେ ।
ସ୍ୱାଦସଉରଭେ ସର୍ବବାଳେ ଭୋଜନ କଲେ ॥
ଯଶୋବନ୍ତୀ ଦ୍ରବ୍ୟ ଚାହାଁଇ ଯତନେ ଭୁଞ୍ଜାଇ ।
ଏକ ଆରେକ ଛଳାଇ ପୁଷ୍ପ ମନ ରଞ୍ଜାଇ ॥
ଯହିଁ ଯାହାର ସ୍ପୃହା ତାହା ଅଣାଇଦିଏ ।
ହାସରସେ ବିଦ୍ୟୁଲୋଭେ ଖାଇବାର ଉପାୟେ ॥
ଅମା ଏରୂପେ ରନ୍ଧନ ଯେବେ ନିତ୍ୟେହିଁ କର ।
କୃଷ୍ଣ ମନରୁଚ ହେବ ଭୁଞ୍ଜି ଉଦର ଭର ॥
ମା ବୋଲନ୍ତି ପେଟଭରି ଯେବେ ଭୁଞ୍ଜ କହ୍ନାଇ
ତେବେ ଏରୂପ କରିବ ରାଇ ନିତ୍ୟ ଅଣାଇ ॥
ଗବାକ୍ଷଗବାକ୍ଷ ଭିତରେ ଦେଖେ ଭୋଜନ ଲୀଳା ।
ମୁଖପଦ୍ମ ମକରନ୍ଦେ ନେତ୍ରଭ୍ରମର ମେଳା ॥
କୃଷ୍ଣଲୋଚନ ଚକୋର ରାଧାହିଁ ଚନ୍ଦ୍ରବଦନେ ।
ବେନଜନ ଦରଶନ ସ୍ପରଶନ ମନନେ ॥
ପୂର୍ଣ୍ଣ ଅମୃତ ଭୋଜନେ ସର୍ବେ ଉଦର ଭରି ।
କୃଷ୍ଣ ସବୁ ଦ୍ରବ୍ୟ ଅଧେ ଅଧେ ଭୋଜନ କରି ॥
ଯତ୍ନେ ଧନିଷ୍ଠା ସେ ଅବଶେଷ ପାତ୍ରେ ପୂରାଇ ।
ଭୃତ୍ୟଜନ ଜଳ ଆଚମନ କୁଣ୍ଡେ କରାଇ ॥
କୃଷ୍ଣ ତାମ୍ବୁଳ ଭୁଞ୍ଜି ପଦ୍ମଢଙ୍ଗେ ପଲଙ୍କପରେ ।
ଦେବୀଆଜ୍ଞା ଘେନଭୁଞ୍ଜେ ରାଇ ସଖୀ ସଙ୍ଗରେ ॥
ସର୍ବେ ତୋଷ ଭୋଜନରେ ରାଧା କୃଷ୍ଣ ଶେଷରେ ।
ଆଚମନ ମୁଖବାସ ଦାସ ସେବେ ପାଶରେ ॥
ଏଥୁ ପଞ୍ଚମବୋଲି ସହସ୍ରପଦ ଶରଣେ ।
ଏଣେ ଭକତ ହୁଏ ନିର୍ଭୟ ଜନ୍ମମରଣେ ॥
ଶୁଣି ବଇଷ୍ଣବ ଗୋସାଇଁ ମୋ ଦୋଷ ନ ଧର ।
ସଖୀଭାବ ଉପାସନା ଜନେ କର ବିଚାର ॥
ଅନ୍ୟେ ପ୍ରକାଶ ନ କର ମୋର ବିନୟ ଘେନ ।
ଦନ୍ତେ ତୃଣ ଧରିଣ ମୋର ଏତେ ମାଗୁଣି ॥
ସଂସ୍କୃତେ ରୂପସନାତନ ଗୋସାଇଁ ଲେଖି ।
ବିଷୟୀ ହେତୁରେ ପ୍ରାଣୀ ନ ପାଇଲେ ତା ଦେଖି ॥
ତେଣୁ ପରାକୃତ ଲେଖି ଆପଣାକୁ ବୁଝାଇ ।
ଦୁରାଚାର ପାଷାଣ୍ଡ ଏ ନାନାମତେ ଭଣ୍ଡାଇ ॥
ରାଧାକୃଷ୍ଣ ପ୍ରେମ ଗୂଢ଼ତର ନିଗମପର ।
ତେଣୁ ଶେଷଈଶଲୋକେ ଶେଷ ବୁଦ୍ଧେ ଗୋଚର ॥
ଗାଢ଼ ଲଉଲ୍ୟ ନମ୍ରତା ହେଲେ ଏ ରସ ପାଇ ।
ଶ୍ରଦ୍ଧା ଶକ୍ତି ରୁଚ ଆଦି ଭାବେ ସଙ୍ଗେ ମିଳଇ ॥
ବହୁ ଜନ୍ମଜନ୍ମାନ୍ତରେ ସାଧୁ ସଙ୍ଗେ ସାଧନ ।
ଅସାଧୁର ସଙ୍ଗେ ଅରଜିଲା ଧନ ନିର୍ଦ୍ଧନ ॥
ଏହିହେତୁରୁ ସୁଜନେ ସାଧୁସଙ୍ଗ କରିବା ।
ଗୁରୁପାଦ-ନାବଆଶ୍ରେ ଭବସିନ୍ଧୁ ତରିବା ॥
ଆଶ୍ରେ କର ଶ୍ରୀଗୁରୁ ଶ୍ରୀବୈଷ୍ଣବଚରଣ ।
ଦାଶରଥି ଦାସ ରାଧାଗୋବିନ୍ଦେଣ ଶରଣ ॥

—— * ——

# ପ୍ରକାଶିତ ପୁସ୍ତକାବଳୀ

## ବୈଦିକ ସାହିତ୍ୟ

୧ । ପୁରୁଷବୋଧିନୀ ଶ୍ରୁତିଃ ଟ ୨-୫୦

୨ । ବୈଷ୍ଣବ ଶ୍ରାଦ୍ଧ ପଦ୍ଧତି ଟ ୧-୦୦

## ପୌରାଣିକ

୩ । ଶ୍ରୀ ଗୌରାଙ୍ଗ ଭାଗବତ—ଶ୍ରୀ ଭଗବାନ ଦାସ ଟ ୪-୦୦

୪ । ମନଶିକ୍ଷା—ଶ୍ରୀ ଭକ୍ତ ଚରଣ ଦାସ ଟ ୫-୦୦

୫ । ମହାଭାବ ପ୍ରକାଶ—ଶ୍ରୀ କହ୍ନାଇ ଖୁଣ୍ଟିଆ ଟ ୨-୨୫

## ଭଜନ, କୀର୍ତ୍ତନ ଓ ପଦାବଳୀ

୬ । ମାନଗୋବିନ୍ଦ ପଦାବଳୀ—ଭକ୍ତକବି ମାନଗୋବିନ୍ଦ ଓଝା ଟ ୨-୭୫

୭ । ବନମାଳୀ ପଦାବଳୀ—ଭକ୍ତକବି ବନମାଳୀ ଦାସ ଟ ୬-୫୦

୮ । କଲ୍ୟାଣ କଳ୍ପତରୁ—ସଚ୍ଚିଦାନନ୍ଦ ଭକ୍ତିବିନୋଦ ଠାକୁର ଟ ୨-୫୦

## ଜୀବନୀ ଓ ସମାଲୋଚନା

୯ । ଶ୍ରୀଚୈତନ୍ୟ ଶିକ୍ଷାମୃତ—ଶ୍ରୀ ଭକ୍ତିବିନୋଦ ଠାକୁର ଟ୧୦-୦୦

୧୦ । ଭକ୍ତକବି ଗୋପାଳକୃଷ୍ଣ ଟ ୨-୦୦

୧୧ । ଭକ୍ତଚରଣ ଦାସ ଓ ତଦୀୟ ରଚନାବଳୀ ଟ ୩-୦୦

୧୨ । ଓଡ଼ିଆ ସାହିତ୍ୟରେ ବିଭିନ୍ନ ଧର୍ମଧାରା ଟ ୮-୦୦
(ଅଦ୍ୱୈବାଦୀ, ବୌଦ୍ଧ ଓ ଜୈନଧର୍ମ)

୧୩ । ପ୍ରମେୟ ରତ୍ନାବଳୀ (ସଂସ୍କୃତ ଅନୁବାଦ) ଶ୍ରୀ ବଳଦେବ ବିଦ୍ୟାଭୂଷଣ ଟ ୫-୦୦

୧୪ । ପ୍ରଯୁକ୍ତାଖ୍ୟାତମଞ୍ଜରୀ (ସଂସ୍କୃତ କ୍ରିୟା ଅଭିଧାନ) ଶ୍ରୀଲ ରୂପଗୋସ୍ୱାମୀ ଟ ୧-୫୦

୧୫ । ଶ୍ରୀ ଚୈତନ୍ୟ ଚନ୍ଦ୍ରାମୃତ—ଶ୍ରୀଲ ପ୍ରବୋଧାନନ୍ଦ ସରସ୍ୱତୀ ଟ ୨-୨୫

୧୬ । ଜୈବଧର୍ମ ସଚ୍ଚିଦାନନ୍ଦ ଭକ୍ତିବିନୋଦ ଠାକୁର ଟ ୮-୦୦

୧୭ । ମନଃଶିକ୍ଷା ଶ୍ରୀଲ ରଘୁନାଥ ଦାସ ଗୋସ୍ୱାମୀ ଟ ୦-୫୦

୧୮ । ସିଦ୍ଧାନ୍ତ ଦର୍ପଣମ୍-ଶ୍ରୀଲ ବଳଦେବ ବିଦ୍ୟାଭୂଷଣ ଟ ୧-୦୦

୧୯ । ଶ୍ରୀ ଶ୍ରୀ ଗୋଦ୍ରୁମଚନ୍ଦ୍ର ଭଜନୋପଦେଶଃ

ପ୍ରାପ୍ତିସ୍ଥାନ

**ଶ୍ରୀ ହରିସଂକୀର୍ତ୍ତନ ପ୍ରେସ**

ଓଡ଼ିଆ ବଜାର, କଟକ-୧

Printed at Shri Hari Sankirtana Press, Cuttack-1